# ଅମର କଥାକାର
# ପ୍ରେମ୍‌ଚାନ୍ଦ୍‌



ବିଦ୍ୟାପୁରୀ

ପ୍ରଥମ ପ୍ରକାଶ : ଜୁଲାଇ, ୧୯୯୨

ପ୍ରକାଶକ

ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ-୭୫୩ ୦୦୨

ମୁଦ୍ରଣ

ପ୍ରଶାନ୍ତ ପ୍ରିଣ୍ଟୋକ୍ସ
ଶେଖ୍ ବଜାର, କଟକ-୮

ମୂଲ୍ୟ—ଟ ୬-୦୦

# ଅମର କଥାକାର
# ପ୍ରେମଚନ୍ଦ

ସ୍ୱାମୀ ଦୟାନନ୍ଦ, ବିବେକାନନ୍ଦ, ତିଳକ, ଗାନ୍ଧୀ, କାର୍ଲମାର୍କସ ଏବଂ ମାକ୍ସିମ ଗୋର୍କୀ ପ୍ରଭୃତି ମାନବତାବାଦୀ ଯୁଗପୁରୁଷଙ୍କ ଆଦର୍ଶରେ ଅନୁପ୍ରାଣିତ ମୁନ୍‌ସୀ ପ୍ରେମଚନ୍ଦ ମାନବ-ମୁକ୍ତିର ଅଗ୍ରଦୂତ ଲେଖକ ଭାବରେ ସୁପରିଚିତ । ହିନ୍ଦୀ ସାହିତ୍ୟର ମହାକବି କବୀର ଓ ତୁଳସୀଦାସଙ୍କ ପରମ୍ପରାରେ ପରିପୁଷ୍ଟ ପ୍ରେମଚନ୍ଦଙ୍କ ଲେଖନୀ କବୀରଙ୍କ ଠାରୁ ବିଦ୍ରୋହ ତଥା ତୁଳସୀଙ୍କ ଠାରୁ ସମନ୍ୱୟ ଦୃଷ୍ଟି ଗ୍ରହଣ କରିଥିଲା । ରାଜନୈତିକ, ସାମାଜିକ, ଧାର୍ମିକ ଆଦି ପ୍ରତ୍ୟେକ କ୍ଷେତ୍ରରେ ମଣିଷକୁ ଦାସତ୍ୱର ବନ୍ଧନରୁ ମୁକ୍ତ କରିବା ପାଇଁ ପ୍ରେମଚନ୍ଦଙ୍କର ଜୀବନବ୍ୟାପୀ ସଂଗ୍ରାମ ତାଙ୍କୁ ବିଶ୍ୱର ପ୍ରଥମ ଶ୍ରେଣୀସ୍ଥ ସାହିତ୍ୟିକଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କରିଥିଲା । ଦେଶର ଅଗଣିତ ପୀଡ଼ିତ, ଶୋଷିତ ଓ ଅବହେଳିତ ଜନତାଙ୍କୁ ମୁକ୍ତିର ମଶାଲ ଦେଖାଇବା ପାଇଁ ସେ ସ୍ୱରାଜ୍ୟ ଚାହୁଁଥିଲେ ଏବଂ ସେଥିପାଇଁ ଗାନ୍ଧୀଙ୍କ ଦ୍ୱାରା ପ୍ରଦର୍ଶିତ ପନ୍ଥାକୁ ସେ ସାହିତ୍ୟ ମାଧ୍ୟମରେ ପ୍ରସାରିତ କରୁଥିଲେ । ଦୀର୍ଘକାଳରୁ ସାମାଜିକ ଅନ୍ୟାୟ ଓ ଅନ୍ଧବିଶ୍ୱାସର ଶିକାର ହୋଇ ଆସୁଥିବା କୃଷକ, ଶ୍ରମିକ, ଅସ୍ପୃଶ୍ୟ ତଥା ନାରୀ ପାଇଁ ପ୍ରେମଚନ୍ଦଙ୍କ ପ୍ରାଣ କାନ୍ଦି ଉଠୁଥିଲା । ପରିଣାମ ସ୍ୱରୂପ ତାଙ୍କର ପ୍ରତିଟି ରଚନାରେ ଏହି

ବେଦନା ଓ ବିଦ୍ରୋହ ଉଭୟ ପରିସ୍ଫୁଟ ହୋଇ ଉଠିଥିଲା । ପ୍ରଥମେ ଉର୍ଦ୍ଦୁ ଓ ପରେ ପରେ ହିନ୍ଦୀ କଥା-ସାହିତ୍ୟକୁ ଶସ୍ତା ମନୋରଞ୍ଜନ, ଚମତ୍କାରିତା, ରୋମାଣ୍ଟିକ୍ ପ୍ରବୃତ୍ତି ଓ କଳ୍ପନା-ବିଳାସର ଅନ୍ଧାରି ମୂଳକରୁ ଉଦ୍ଧାର କରି ବାସ୍ତବତାର ମୁକ୍ତ ଆକାଶ ତଳେ ଆଣି ଠିଆ କରାଇଥିଲେ ।

## ଜନ୍ମ

ଏହିଭଳି ଯଥାର୍ଥବାଦୀ ଯୁଗ-ପ୍ରବର୍ତ୍ତକ କଥାକାର ପ୍ରେମଚନ୍ଦଙ୍କ ଆବିର୍ଭାବ ଘଟିଥିଲା ପ୍ରାଚୀନ ବାରାଣସୀ ଅଥବା କାଶୀ ନଗରୀଠାରୁ ସାତ କିଲୋମିଟରେ ଦୂର ଲମହୀ ଗ୍ରାମରେ । ବରୁଣା ଏବଂ ଅସୀ ନାମକ ଦୁଇଟି ନଦୀ ମଧ୍ୟସ୍ଥ ଭୂଭାଗରେ ଅବସ୍ଥିତ ଏହି ବାରାଣସୀ ସହରର ଆଧୁନିକ ନାମ ହେଉଛି ବନାରସ । ଭଗବାନ୍ ବିଶ୍ୱନାଥଙ୍କ ପୀଠ ଭାବରେ ପ୍ରତିଷ୍ଠିତ ଏହି ସହର ପବିତ୍ର ଗଙ୍ଗାନଦୀ କୂଳରେ ଗଢ଼ି ଉଠିଥିବାରୁ ବର୍ଷସାରା ଏଠାରେ ତୀର୍ଥଯାତ୍ରୀଙ୍କର ସମାଗମ ହୋଇଥାଏ ।

ବନାରସ ଠାରୁ ଆଜମଗଡ଼ ସହର ଆଡ଼କୁ ଯିବା ରାସ୍ତାରେ ସାଧାରଣ ଗାଁଟିଏ—ଲମହୀ । ଉତ୍ତର ପ୍ରଦେଶର ପୂର୍ବାଞ୍ଚଳୀୟ ଯେ କୌଣସି ସାଧାରଣ ଗାଁ ଭଳି । ଏଠାରେ ଅଧିକାଂଶ ଝାଟିମାଟିରେ ତିଆରି ନଡ଼ା ଛପର ଘର । କାଁ-ଭାଁ ଟାଇଲ ଖପର ଘର ଦେଖାଯାଏ । ଏଠି ସାହି ଭାଇ ମିଳିମିଶି ଚଳନ୍ତି । ବେଳେବେଳେ ପରସ୍ପର ସହିତ କଳିଗୋଳ ବି କରନ୍ତି । ତଥାପି ମେଳା ମଉଛବରେ ମନେହୁଏ ସତେ ଯେମିତି ଗାଁ ସାରା ସଭିଏଁ ଗୋଟିଏ ପରିବାରର । କାହା ଘରେ ଛୁଆଟିଏ ଜନ୍ମ ହେଲେ କମ୍ବା ବୁଢ଼ାଟିଏ ମରିଗଲେ ଗାଁ ଗୋଟାକ ଯାକ ସେଇ ସୁଖ-

ଦୁଃଖରେ ସାମିଲ୍ ହେଉଥିଲେ । ସେମାନଙ୍କ ମଧ୍ୟରେ ଯେ ଈର୍ଷା, ଦ୍ୱେଷ, କୂଟ କପଟ, ଘୃଣା, ପରଶ୍ରୀକାତରତା ନ ଥିଲା, ଏ କଥା କହି ହେବନି । ହଁ, ପାରସ୍ପରିକ ସଦ୍‌ଭାବ ଓ ମାନବିକତା ଆଗରେ ଏ ସବୁ ଆପେ ଆପେ ମଉଳି ପଡ଼ୁଥିଲା ।

ଆଜିକି ପ୍ରାୟ ଦୁଇ ଶହ ବର୍ଷ ତଳର କଥା । ଭାରତର ଇତର ଗାଁ ଭଳି ଲମହୀ ମଧ୍ୟ ଭାରି ଅନୁନ୍ନତ ଥିଲା । ଆଜି ଭଳି ବିଜୁଳି ଆଲୁଅ, ଗାଡ଼ି ମୋଟରର କଥା ଅନ୍ୟାନ୍ୟ ଆଧୁନିକ ସୁଖ-ସୁବିଧା ନ ଥିଲା । ଗୃହକର୍ମଆମାନେ ଖୁବ୍ କମ୍ ଦରମା ପାଉଥିଲେ । ଗାଁରେ ପଇସା କମ୍ ଥିଲେହେଁ ଖାଦ୍ୟ-ପଦାର୍ଥର ଅଭାବ ନ ଥିଲା । ଲମହୀରେ ବିଭିନ୍ନ ଜାତିର ଲୋକେ ବାସ କରୁଥିଲେହେଁ କାୟସ୍ଥ (କରଣ) ପରିବାରର ସଂଖ୍ୟା ଅଧିକ ଥିଲା । ନିଜର କୌଳିକ ବୃତ୍ତି କରୁଥିବା ଅନ୍ୟ ଜାତିର ଲୋକଙ୍କର ପାଠ ପ୍ରତି ବିଶେଷ ଆଗ୍ରହ ନ ଥିଲା । ତେବେ କରଣ ପରିବାରର ଲୋକେ ପ୍ରାୟ ପଢ଼ାଶୁଣା କରୁଥିଲେ । ଲମହୀ ଗାଁରେ ଏହିଭଳି ଜଣେ ଶିକ୍ଷିତ କରଣ ଭଦ୍ରବ୍ୟକ୍ତି ଥିଲେ ମୁନ୍‌ସୀ ଗୁରୁ ସହାୟଲାଲ୍ । ଗାଁର ପଟୱାରୀ (କରଣ) ପଦରେ ନିଯୁକ୍ତି ପାଇ ଚାକିରି କରୁଥିଲେ ସେ । ସେତେବେଳେ ପଟୱାରୀମାନଙ୍କର ଦରମା ଖୁବ୍ କମ୍ ଥିଲା—ମାସକୁ ମାତ୍ର ଚାରି/ପାଞ୍ଚ ଟଙ୍କା । ହେଲେ ଗ୍ରାମବାସୀଙ୍କ ଉପରେ ସେମାନଙ୍କର ଅଖଣ୍ଡ ଆଧିପତ୍ୟ ରହିଥିଲା । ଏହିଭଳି ଜଣେ ପ୍ରଭାବଶାଳୀ ବ୍ୟକ୍ତି ଥିଲେ ମୁନ୍‌ସୀ ଗୁରୁ ସହାୟଲାଲ । ତାଙ୍କର ଜମିବାଡ଼ି ବିଶେଷ ନ ଥିଲା । ଭୂସମ୍ପତ୍ତି ଭିତରେ ମାତ୍ର ଛ'ମାଣ ଜମି । ଶସ୍ତା କାଳ । କୌଣସି ପ୍ରକାରେ ଗୁଜୁରାଣ ମେଣ୍ଟି ଯାଉଥିଲା । ତାଙ୍କର ଅଜାୟବଲାଲ ବୋଲି ପୁଅଟିଏ । ସେ ଡାକମୁନ୍‌ସୀ ଭାବରେ କାମ କରୁଥାନ୍ତି ।

ମୁନ୍‌ସୀ ଅଜାୟବଲାଲ ନିଜ ବାପାଙ୍କ ଭଳି ଖୁବ୍ ସଚ୍ଚୋଟ ଥିଲେ । କରଣୀ ଗୃହସ୍ଥ । ଖୁବ୍ କମ୍ ଦରମା । ସେଥିରେ ପୁଣି ବାରମ୍ବାର ବଦଳି ଯୋଗୁଁ ଖର୍ଚ୍ଚ ପଡ଼ୁଥାନ୍ତି । ପତ୍ନୀ ଆନନ୍ଦୀ ଦେବୀ ଖୁବ୍ ସାବଧାନର ସହିତ ପରିବାରକୁ ଚଳାଇ ନେଉଥାନ୍ତି । ସେ ବଡ଼ ଘରର ଝିଅ ତଥା ଜଣେ ବିଶାଳ ଏବଂ ଉଦାର ହୃଦୟର ମହିଳା ଥିଲେ ।

ମୁନ୍‌ସୀ ଅଜାୟବଲାଲଙ୍କର ଝିଅଟିଏ ଜନ୍ମ ହେଲା । ବାପା-ମା' ତାକୁ ସୁଗ୍ରୀ (ଶୁଆ) ବୋଲି ନାଁ ଦେଲେ । ତା'ପରେ ଗୋଟିକ ପରେ ଗୋଟିଏ ହୋଇ କେତେଗୋଟି ଝୁଅ ଜନ୍ମ ହୋଇ ସାଙ୍ଗେ ସାଙ୍ଗେ ମରିଯିବା ପରେ ପୁଅଟିଏ ଜନ୍ମ ନେଲା । ଗରିବ ଘରେ ଜନ୍ମ ଗ୍ରହଣ କରିଥିବାରୁ ସାଧାରଣ ଗାଉଁଲି ପିଲା ଭଳିହିଁ ଛୁଆଟିର ଲାଳନପାଳନ ହେଲା । ହେଲେ ସ୍ନେହ, ଆଦରର ସୀମା ନାହିଁ । ନିଜର ଗରିବ ଅବସ୍ଥାକୁ ଭୁଲାଇବା ପାଇଁ ହୁଏତ ଅଜାୟବଲାଲ ବଡ଼ ସଉକରେ ପୁଅର ନାଁ ଦେଲେ ଧନପତ୍ ରାୟ । ସେଇ ନାଁରେ ସେ ସ୍କୁଲଖାତାରେ ଯୋଗ ଦେଲେ । କିନ୍ତୁ ଘରେ ତାଙ୍କ ଦାଦା ତାଙ୍କୁ ଗେହ୍ଲାରେ 'ନବାବ' ବୋଲି ଡାକୁଥାନ୍ତି । ତାଙ୍କ ଦେଖାଦେଖି ଅନ୍ୟମାନେ ମଧ୍ୟ ତାଙ୍କୁ ସେଇ ନାଁରେ ଡାକିଲେ । ପାରିବାରିକ ଅଭାବ ଅନାଟନ ସତ୍ତ୍ୱେ ସେମାନେ ବୋଧହୁଏ ଚାହୁଁଥିଲେ ଯେ ପୁଅ ତାଙ୍କର ନବାବ ଭଳି ଆଡ଼ମ୍ବରରେ ରହୁ । ନିଜେ ନବାବ ଭଳି ରହିବାକୁ ଚାହୁଁ ନ ଥିଲେହେଁ ଗୁରୁଜନମାନଙ୍କର ମନ ରଖିବାକୁ ସେ 'ନବାବ ରାୟ' ନାମରେ ଉର୍ଦ୍ଦୁରେ ଲେଖାଲେଖି କରିବାକୁ ଲାଗିଲେ ।

## ବାଲ୍ୟାବସ୍ଥା

ବାଲ୍ୟାବସ୍ଥାରେ ପ୍ରେମଚନ୍ଦଙ୍କର ବାଲସୁଲଭ ଦୁଷ୍ଟାମି କଥା କହିଲେ ନ ସରେ । ଗାଁ ପିଲାଙ୍କ ସାଙ୍ଗରେ ମିଶି କାହା ବିଲରୁ ବୁଟ ଛୁଇଁ ଓପାଡ଼ି ଆଣି ଖାଇବା ଏବଂ କାହା ଆଖୁବାଡ଼ିରୁ ଆଖୁ ଭାଙ୍ଗି ଖାଇବା ତାଙ୍କର ଗୋଟାଏ ସଉକ ଥିଲା । ଆମ୍ବ, ପିଜୁଳି ଗଛକୁ ପଥର ମାରି କଷା, ପାଚିଲା ଉଭୟ ଫଳ ଝଡ଼ାଇବାରେ ସେ ଓସ୍ତାଦ ଥିଲେ । ସାଙ୍ଗ-ସାଥୀଙ୍କୁ ନେଇ ଗୁଲି ଦଣ୍ଡା ଖେଳିଲାବେଳେ ସେ ଭୋକଶୋଷ ଭୁଲି ଯାଉଥିଲେ ।

ଗୋଟିଏ ବୋଲି ପୁଅ ହୋଇଥିବାରୁ ପ୍ରେମଚନ୍ଦଙ୍କ ପାଇଁ ମା' ଆନନ୍ଦୀ ଦେବୀଙ୍କର ଭାରି ଚିନ୍ତା । କାଳେ କାହାର ଦୃଷ୍ଟି ପଡ଼ିଯିବ ବୋଲି ସେ ପୁଅକୁ କଳାଟିକାଟିଏ ଲଗାଇଲେ ଯାଇ ଘରୁ ବାହାରିବାକୁ ଦିଅନ୍ତି । କୁଦୃଷ୍ଟିର ପ୍ରଭାବ ନଷ୍ଟ କରିବା ପାଇଁ ପୁଅବେକରେ ବାଘ ନଖଟିଏ ପିନ୍ଧାଇଥାନ୍ତି । ସମ୍ଭବତଃ, ମା'ଙ୍କର ଗଭୀର ସ୍ନେହ-ମମତା ପାଇ ପିଲାଦିନେ ପ୍ରେମଚନ୍ଦ ଖୁବ୍ ଚଗଲା ହୋଇ ପଡ଼ିଥିଲେ । ଦିନକୁ ଦିନ ସେ ଯେମିତି ବଡ଼ ହେବାକୁ ଲାଗିଲେ, ତାଙ୍କ ଚଗଲାମି ଆପେ ଆପେ ଦୂର ହୋଇଗଲା ।

## ଶିକ୍ଷା

କରଣ ଘରେ ପିଲାଟି ଦିନରୁ ପଢ଼ାପଢ଼ି ପ୍ରତି ବିଶେଷ ଦୃଷ୍ଟି ଦିଆଯାଏ । ପୁଅ-ଝିଅ ସମସ୍ତଙ୍କୁ କିଛି ନା କିଛି ପଢ଼ିବାକୁ ପଡ଼ିଥାଏ । ଘରେ କିଛି କିଛି ଅକ୍ଷର ଜ୍ଞାନ ହୋଇ ସାରିବା ପରେ ପ୍ରେମଚନ୍ଦଙ୍କ ସ୍କୁଲ ଯିବା କଥା ଉଠିଲା । ମଫସଲରେ ସ୍କୁଲ କହିଲେ ଚାଟଶାଳୀକୁ ବୁଝାଏ । ତା ବି ପ୍ରତି ଗାଁରେ ନ ଥାଏ ।

କେତେ ଖଣ୍ଡି ଗାଁ ପାଇଁ ଗୋଟିଏ ଚଟ୍ଟଶାଳୀ । ତା ପୁଣି ଦୁଇ ପ୍ରକାରର । କେଉଁଠି ଦ୍ୱିତୀୟ ଶ୍ରେଣୀ ଥାଏ ତ କେଉଁଠି ଚତୁର୍ଥ ଯାଏ । ତେଣିକ ସ୍କୁଲ୍, କଲେଜ ସବୁ ସହର, ବଜାରରେ । ପାଠ ପଢ଼ିବାକୁ ଖୁବ୍ କମ୍ ବୟସର ପିଲାମାନଙ୍କୁ ମଧ୍ୟ ବେଶ୍ କିଛି ବାଟ ଚାଲି ଚାଲି ଚଟ୍ଟଶାଳୀକୁ ଯିବାକୁ ହୁଏ ।

ଗାଁ ଚଟ୍ଟଶାଳୀମାନଙ୍କରେ ହିନ୍ଦୀ, ଉର୍ଦ୍ଦୁ ଉଭୟ ଶିକ୍ଷା ଦିଆଯାଏ । କିନ୍ତୁ ଉର୍ଦ୍ଦୁ ସେତେବେଳକାର ସରକାରୀ ଭାଷା ହୋଇଥିବାରୁ ଚାକିରୀ ପାଇଁ ଲୋକେ ଉର୍ଦ୍ଦୁ ପଢ଼ିବାକୁ ଅଧିକ ପସନ୍ଦ କରୁଥିଲେ । ବିଶେଷ କରି କରଣ ପରିବାରମାନଙ୍କରେ ଏଥିପାଇଁ ଅଧିକ ଆଗ୍ରହ ଦେଖା ଯାଉଥିଲା । ମୁନ୍‌ସୀଗିରି କରିବା କିମ୍ବା ଲେଖାପଢ଼ି କରି କୋର୍ଟ, କଚେରୀ କାମରେ ଯୋଗ ଦେବା ଯେମିତିକି ସେମାନଙ୍କର ଖାନଦାନୀ ପେଷା ଥିଲା ।

ପ୍ରେମଚନ୍ଦଙ୍କୁ ମଧ୍ୟ ପ୍ରାଥମିକ ଶିକ୍ଷା ଲାଭ କରିବା ପାଇଁ ତାଙ୍କର ଜଣେ ଦାଦା ପୁଅ ଭାଇ ହଳଧର ସହିତ ପାଖ ଗାଁର ଜଣେ ମୌଲବୀଙ୍କ ମଦରସା ଅର୍ଥାତ୍ ଚଟ୍ଟଶାଳୀକୁ ଯିବାକୁ ପଡ଼ିଲା । ଦରଜୀ କାମ କରିବା ମୌଲବୀ ସାହେବଙ୍କର କୌଳିକ ବ୍ୟବସାୟ ଥିଲା । ସେଥିରୁ କିଛିଟା ସମୟ ଦେଇ ସେ ଚଟ୍ଟଶାଳୀଟିଏ କରି ଫାରସୀ ପଢ଼ାଉଥିଲେ । ଶୁଆ, ଶାରୀ, ହରଡ଼ ପ୍ରଭୃତି ବିଭିନ୍ନ ପ୍ରକାରର ପକ୍ଷୀ ପାଳିବା ମୌଲବୀ ସାହେବଙ୍କର ଗୋଟାଏ ସଉକ ଥିଲା । ସେହି ପକ୍ଷୀମାନଙ୍କର ଆହାର ନିମିତ୍ତ ଛାତ୍ରମାନେ ବେଳେବେଳେ କୀଟ ପତଙ୍ଗ ଧରି ଆଣି ମୌଲବୀ ସାହେବଙ୍କୁ ଦିଅନ୍ତି । ବିଶେଷ କରି ପାଠ ପଢ଼ାରେ କାହାରି ଅବହେଳା ଦେଖି ସେ ଯେତେବେଳେ ରାଗି ଯାଆନ୍ତି, ପିଲାଏ ପକ୍ଷୀଙ୍କ ପାଇଁ କୀଟ ପତଙ୍ଗ ଧରି ଆଣି ତାଙ୍କ କ୍ରୋଧ ଶାନ୍ତ କରିଥାନ୍ତି ।

ସେତେବେଳେ ସଂସ୍କୃତ ଓ ଫାରସୀ ପଢ଼ିବା ବେଳେ ଘୋଷିବା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ଉନ୍ମୁକ୍ତ ଭାବରେ ଖୋଲା ଆକାଶ ତଳେ ଖେଳ ବୁଲିବା ବୟସରେ ଘର ଭିତରେ ବସି ଫାରସୀ ଘୋଷିବା ପ୍ରେମଚନ୍ଦଙ୍କୁ ଭାରି କଷ୍ଟକର ମନେ ହେଉଥିଲା । ଏଣେ ମୌଲବୀ ସାହେବଙ୍କ ଘରୋଇ ପାଠଶାଳାରେ ତ କୌଣସି ଉପସ୍ଥାନ ଖାତା ନ ଥିଲା କିମ୍ବା ଅନୁପସ୍ଥିତି ପାଇଁ କିଛି ଜୋରିମାନା ଦେବାକୁ ପଡ଼ୁ ନ ଥିଲା । ଏଣୁ ମଝି ମଝିରେ ଘରୁ ବାହାରି ଆସି ଦୁଇ ଭାଇ ଗୁହାଳୀକୁ ନ ଯାଇ ଖୁବ୍ ବୁଲାବୁଲି କରୁଥାନ୍ତି । ସକାଳୁ ବାସି ରୁଟି ଓ ଗୁଡ଼ ଖାଇ ଖରା ବେଳେ ଖାଇବା ପାଇଁ ମଟର ଓ ବୁଟ ସାଙ୍ଗରେ ନେଇ ଦୁହେଁ ଗୁହାଳୀକୁ ବାହାରି ପଡ଼ନ୍ତି । ରାସ୍ତାରେ କେତେବେଳେ ଥାନା ପାଖରେ ପୋଲିସମାନଙ୍କର ପ୍ୟାରେଡ଼ ଦେଖନ୍ତି ତ କେତେବେଳେ ମାଙ୍କଡ଼ ଓ ଭାଲୁ ନାଚ ପଛରେ ବହୁ-ଦୂର ଗୋଡ଼ାଇ ଯାଆନ୍ତି । ବେଳେବେଳେ ରେଲ ଷ୍ଟେସନରେହିଁ ସାରା ଦିନ କଟିଯାଏ । ବାଟରେ ଦୋକାନ, ବଜାରରେ ପ୍ରକାର ପ୍ରକାର ଖାଇବା ଜିନିଷ ଦେଖି ପ୍ରେମଚନ୍ଦ ଓ ହଳଧରଙ୍କ ପାଟିରୁ ଲାଳ ପଡ଼େ । ପଇସେ ଦି'ପଇସାରେ ଗୁଡ଼ାଏ ଜିନିଷ ମିଳେ । ହେଲେ ପଇସା ତାଙ୍କୁ କିଏ ଦେବ ?

ଦିନକର କଥା । ବହୁ ଉଦ୍ୟମ କରି ପ୍ରେମଚନ୍ଦ ଭାଇ ହଳ-ଧରଙ୍କ ସହ ଘରୁ ଟଙ୍କାଟିଏ ଚୋରି କରିବାରେ ସଫଳ ହେଲେ । ଏତେବଡ଼ ସଫଳତା ପାଇଲା ପରେ ଆଉ ବାସି ରୁଟିକୁ ପଚାରେ କିଏ ! ତରବରରେ କିଛି ନ ଖାଇ ଉଭୟେ ଗୁହାଳୀ ଉଦ୍ଦେ-ଶ୍ୟରେ ବାହାରିଗଲେ । ବାଟରେ ଦୁଇ ପଇସାର ପିଜୁଳି କିଣି ଦୁହେଁ ପେଟ ଭରି ଖାଇଲେ । ସେତେବେଳେ ମିଠେଇ ସେର

ବତ୍ତଣ ପଇସା । ତଥାପି ମିଠେଇ କିଣି ଶୀଘ୍ର ପଇସା ସାର-ଦେବାକୁ ପ୍ରେମଚନ୍ଦ ରାଜି ନ ଥିଲେ । ଏଣୁ ପାଖ ଗାଁରେ ଚାଲି-ଥିବା ମେଳା ଦେଖିବାକୁ ଗଲେ । ସେଠି ପେଟଭରି ବଣିଲଡ଼ୁ ଓ ପାଣିପୁରି ଖାଇଲେ । ଟଙ୍କାଏ ତଥାପି ପୁରା ଟଙ୍କାଏ ପଇସା । ଏକା ଏକା ଖାଇ ଶେଷ କରିବା ସହଜ ନୁହେଁ । ଏଣେ ହଳଧର ପାଠ-ଶାଳୀରୁ ଆସି ସେଠି ପହଞ୍ଚିବା କଥା । ତା'ର ବ ଦେଖା ନାହିଁ । ପ୍ରେମଚନ୍ଦ ଖାଲି ହୋଇ ଘରକୁ ଫେରିବାକୁ ସ୍ଥିର କଲେ ।

ପାଠଶାଳୀରେ ପହଞ୍ଚି ପ୍ରେମଚନ୍ଦ ଯାହା ଶୁଣିଲେ, ସେଥିରେ ତାଙ୍କର କାନମୁଣ୍ଡା ଝାଁ ଝାଁ ହେଲା । ଦାଦା ତାଙ୍କର ପାଠଶାଳୀରେ ପହଞ୍ଚି ପଚରା ଉଚରା କରିଛନ୍ତି । ମାଡ଼ ଖାଇ ହଳଧର ବୋଧହୁଏ ସତକଥାଟା କହି ଦେଇଛନ୍ତି । ପରେ ଦାଦା ତାଙ୍କୁ ଘରକୁ ନେଇ ଚାଲି ଯାଇଛନ୍ତି । ଘରେ ପହଞ୍ଚିଲା ପରେ ପ୍ରେମଚନ୍ଦଙ୍କ ଅବସ୍ଥା ଯେ କ'ଣ ହେବ, ସେ କଥା ଭାବିଲା ବେଳକୁ ତାଙ୍କ ଦେହରୁ ସତେ ଯେମିତି ରକ୍ତ ଶୁଖି ଯାଉଥିଲା । ଖରାପ କାମ କଲେ ପୁଣି ଏଭଳି ଯନ୍ତ୍ରଣା ସହିବାକୁ ହୁଏ ! ସେ ଆଉ ଜୀବନରେ ଚୋରି କରିବେ ନାହିଁ ବୋଲି ମନେ ମନେ ପ୍ରତିଜ୍ଞା କଲେ ।

ଘରେ ପହଞ୍ଚିବା ସାଙ୍ଗେ ସାଙ୍ଗେ ତାଙ୍କୁ ବାପାଙ୍କ ସାମ୍ନାରେ ହାଜର ହେବାକୁ ପଡ଼ିଲା । ମାଡ଼ ଖାଇବା ପୂର୍ବରୁ ପ୍ରେମଚନ୍ଦ ଏତେ ଜୋରରେ ଚିତ୍କାର କରି କାନ୍ଦିଲେ ଯେ ବାପାଙ୍କ କ୍ରୋଧ ତରଳି ଗଲା । ତା'ପରେ ମା'ଙ୍କୁ ଫୁସୁଲାଇ କୌଣସି ପ୍ରକାରେ ସେ ଦଣ୍ଡିତ ହେବାରୁ ରକ୍ଷା ପାଇଗଲେ । ବିଚରା ହଳଧର ସେତେବେଳକୁ ଦାଦାଙ୍କ ହାତରୁ ବହୁତ ମାଡ଼ ଖାଇସାରିଥାଏ ।

ଦିନକର ଘଟଣା । ପ୍ରେମଚନ୍ଦଙ୍କ ଅଜାଙ୍କ ଦେହ ଭୀଷଣ ଖରାପ ଥାଏ । ଝିଅକୁ ଡକାଇ ପଠାଇଲେ । ପ୍ରେମଚନ୍ଦଙ୍କ ପରୀକ୍ଷା ଥିବାରୁ ତାଙ୍କୁ ଘରେ ଛାଡ଼ି ଦେଇ ସେ ଏକା ଏକା ବାପ ଘରକୁ ଗଲେ । ଗଲାବେଳେ ମହଣେ ଗୁଡ଼ ଗୋଟାଏ ମାଠିଆରେ ମୁହଁ ବନ୍ଦ କରି ରଖିଥିଲେ ଏବଂ ଖୋଲା ହାଣ୍ଡିରେ କିଛି ପ୍ରେମଚନ୍ଦଙ୍କ ଖାଇବା ପାଇଁ ରଖି ଦେଇ ଯାଇଥିଲେ । ତିନି ମାସ ପରେ ଫେରିଲାବେଳକୁ ସବୁ ସଫା ।

ଗରିବ ଘରେ ମିଠେଇ କାହୁଁ ଆସିବ ? ଏଣୁ ଗୁଡ଼ ଖଣ୍ଡେ ଖାଇ ଏମାନେ ମିଠେଇର ସ୍ୱାଦ ଅନୁଭବ କରନ୍ତି । ପ୍ରେମଚନ୍ଦ ଗୁଡ଼ ଖାଇବାକୁ ଏତେ ଭଲ ପାଉଥିଲେ ଯେ ସେ ଗୁଡ଼କୁ 'ମିଠେଇର ରଜା' ବୋଲି କହୁଥିଲେ । ଗୁଡ଼ ନ ଥିଲେ ମିଠେଇ ସବୁ ତିଆରି ହୁଅନ୍ତା କିପରି ? ଗୁଡ଼ ପ୍ରତି ପ୍ରେମଚନ୍ଦଙ୍କ ଏଭଳି ଆକର୍ଷଣ ସଂପର୍କରେ ମା' ଆନନ୍ଦୀ ଦେବୀ ଭଲ ଭାବେ ଜାଣନ୍ତି । ଏଣୁ ସେ ପ୍ରତିଦିନ ସକାଳୁ ଦୁଧ ସାଙ୍ଗରେ, ଖରାବେଳେ ରୁଟି ସାଙ୍ଗରେ, ଉପରବେଳା ଚୂଡ଼ା ମୁଢ଼ି ସାଙ୍ଗରେ ଏବଂ ରାତିରେ ପୁଣି ଦୁଧ ସାଙ୍ଗରେ ଗୁଡ଼ ଖାଇବାକୁ ଦେଇଥାନ୍ତି । ତଥାପି ପ୍ରେମଚନ୍ଦଙ୍କ ମନ ମାନେନି । ସେ ପୁଣି ସ୍କୁଲ ଗଲାବେଳେ ବସ୍ତାନୀ ଭିତରେ ପୁରେଇ ଖଣ୍ଡେ ଦି' ଖଣ୍ଡ ଗୁଡ଼ ନେଇଥାନ୍ତି ।

ପ୍ରେମଚନ୍ଦଙ୍କ ବାପା ଅତି ମାତ୍ରାରେ ବିଶ୍ୱସ୍ତ ସରକାରୀ କିରାଣୀ ଭାବରେ ଜଣାଶୁଣା ଥିଲେ । ଅତିଶୀଘ୍ର କାର୍ଯ୍ୟଭାର ନିଜ ଉପରକୁ ନେବା ସଙ୍ଗେ ସଙ୍ଗେ ଘନ ଘନ ବଦଳି ଓ ଘରର ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ ସେ ସାମାନ୍ୟ ଚିଡ଼ଚିଡ଼ା ହୋଇ ପଡ଼ିଥିଲେ । ଏଣୁ ପ୍ରେମଚନ୍ଦ ମା'ଙ୍କ ପ୍ରତି ଅତ୍ୟନ୍ତ ଆସକ୍ତ ଥିଲେ । ମା'ର

ମମତାଠାରୁ ବଳି ମୂଲ୍ୟବାନ୍ ଆଉ କ'ଣ ଥାଇପାରେ ! ପ୍ରେମ-ଚନ୍ଦଙ୍କ ମା' ମଧ୍ୟ ପୁଅ ପାଇଁ ମମତାର ଅପରନ୍ତ ଭଣ୍ଡାର ଖୋଲି ଦେଇଥିଲେ ।

ହଠାତ୍ ଗୁନ୍ଦଉଦ୍ଧଆ ସୁଖର ସଂସାର ଭିତରେ ଦୁଃଖର କଳା ମେଘ ଘୋଟିଗଲା । ଏଲାହାବାଦରେ ଥିଲାବେଳେ ସାମାନ୍ୟ ଅସୁସ୍ଥ ହୋଇ ଆନନ୍ଦୀ ଦେବୀ ସଂସାର ଛାଡ଼ି ଚାଲିଗଲେ । ଏଥିରେ ବାଳକ ପ୍ରେମଚନ୍ଦଙ୍କ ମନରେ ଦାରୁଣ ଆଘାତ ଲାଗିଲା । ଏଣେ ବାରମ୍ବାର ବଦଳି ହେତୁ ବ୍ୟସ୍ତ ହୋଇ ମୁନ୍‌ସୀ ଅଜାୟବଲାଲ ପୁଅକୁ ଲମହିରେ ତା ଜେଜେମା ପାଖରେ ଛାଡ଼ିଦେଲେ । ଆଗରୁ ନିଜ ଗାଁର ପାଣି, ପବନ, ବିଲ ଭୂଇଁ, ଟୋକାମାଳ, ସାଙ୍ଗ-ସାଥୀ ସବୁ ପରିଚିତ ଥିଲେ । ବିଶେଷ ଅସୁବିଧା ହେଲା ନାହିଁ ।

ସମୟର ଚକ ଗଡ଼ି ଚାଲିଲା ।

ମା'ଙ୍କ ମୃତ୍ୟୁ ପରେ ପ୍ରେମଚନ୍ଦଙ୍କ ବାପା ପୁନର୍ବାର ବିବାହ କଲେ । ପ୍ରେମଚନ୍ଦଙ୍କ ଉପରେ ଆଉ କାହାର ନିୟନ୍ତ୍ରଣ ନ ରହି-ବାରୁ ସେ ଏକ ପ୍ରକାର ଲଗାମଛଡ଼ା ହୋଇ ପଡ଼ିଲେ । ସ୍ନେହ ଏବଂ ଶାସନ ଉଭୟରୁ ବଞ୍ଚିତ ହୋଇ ପ୍ରେମଚନ୍ଦ ଦିନକୁ ଦିନ ବିଶୃଙ୍ଖଳିତ ହୋଇ ପଡ଼ୁଥିବା ଜାଣିପାରି ବାପା ତାଙ୍କୁ ନିଜ ପାଖକୁ ଗୋରଖ-ପୁର ନେଇ ଆସିଲେ । ପ୍ରେମଚନ୍ଦ ଏଣିକି ତାଙ୍କ ନୂଆ ମା'ଙ୍କ ପାଖରେ ରହିବାକୁ ଲାଗିଲେ । ଖେଳବୁଲା ଛାଡ଼ି ଏଥର ସେ ପଢ଼ା-ପଢ଼ିରେ ବିଶେଷ ମନଯୋଗ ଦେଲେ । ବିଭିନ୍ନ ଗପ, ଉପନ୍ୟାସ ପଢ଼ିବାବେଳେ ସେ ନିଜକୁ ସେଥିରେ ହଜାଇ ଦେଉଥିଲେ । ବୁଦ୍ଧିଲାଲ ନାମକ ବହିଦୋକାନୀ ପାଖରେ ପ୍ରାୟ ପ୍ରତିଦିନ ବସା-ଉଠା କରି ତା'ଠାରୁ ମାଗଣାରେ ବଡ଼ ବଡ଼ ଉର୍ଦ୍ଦୁ ବହି ନେଇ

ଏକା ଥରକେ ପଢ଼ି ଫେରାଇ ଦେଉଥିଲେ । ଏଣ୍ଟିକବେଳେ ତାଙ୍କ ମନରେ ସାହିତ୍ୟ ପ୍ରତି ଏକ ପ୍ରକାର ଆକର୍ଷଣ ସୃଷ୍ଟି ହେଲା । ଅଷ୍ଟମ ଶ୍ରେଣୀରେ ପଢ଼ିଲା ବେଳେ ସେ ବହୁତ ଗୁଡ଼ିଏ ଉର୍ଦ୍ଦୁ ଗଜଲ ମନେ ରଖିଥିଲେ ।

ଗୋରଖପୁରର ମିଶନ୍ ସ୍କୁଲରୁ ଅଷ୍ଟମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା ବେଳକୁ ପୁନର୍ବାର ତାଙ୍କ ବାପାଙ୍କର ବଦଳି ହୋଇ ଯାଇ-ଥାଏ । ଏଣେ ସାଧାରଣ ଗୃହକାର୍ଯ୍ୟରେ ଖୁବ୍ କମ୍ ଦରମା ହେତୁ ଅଭାବ ଲାଗି ରହିଥାଏ । କୌଣସି ପ୍ରକାରେ କଷ୍ଟେ ମଷ୍ଟେ ପରି-ବାରର ଗୁଜୁରାଣ ମେଣ୍ଟି ଯାଉଥାଏ । ଏପରିକି ବେଳେବେଳେ ପ୍ରେମଚନ୍ଦଙ୍କ ପାଇଁ ହ' ଖଣ୍ଡ ପିନ୍ଧାଲୁଗା ଓ ହଳେ ଯୋତା ଯୋଗାଡ଼ କରିବାକୁ କଷ୍ଟକର ହୋଇ ପଡ଼ୁଥାଏ । ତଥାପି ପାଠପଢ଼ା ପ୍ରତି ତାଙ୍କର ପ୍ରବଳ ଆଗ୍ରହ ଦେଖି ବନାରସର ଏକ ହାଇସ୍କୁଲରେ ତାଙ୍କ ନାମ ଲେଖା ହେଲା । ଲମହୀ ଗାଁରେ ଥିବା ଘର ଠାରୁ ବନାରସରୁ ଦୂରତା ଆଠ କିଲୋମିଟର । ପ୍ରତ୍ୟହ ୧୬ କିଲୋମିଟର ଚାଲି ଚାଲି ପ୍ରେମଚନ୍ଦ ପାଠ ପଢ଼ିବାକୁ ଯାଆନ୍ତି । ସକାଳୁ ବାସିରୁଟି ଓ ଗୁଡ଼ ଖାଇ ବାହାରି ପଡ଼ନ୍ତି । ଦ୍ୱିପ୍ରହରରେ ଖାଇବା ପାଇଁ ସାଙ୍ଗରେ ବୁଟ ଓ ଗୁଡ଼ ନେଇ ଯାଇଥାନ୍ତି । ସନ୍ଧ୍ୟା-ବେଳକୁ ଘରକୁ ଫେରିଲା ବେଳେ ଏତେ କ୍ଲାନ୍ତ ହୋଇ ପଡ଼ୁଥାନ୍ତି ଯେ ପାଠ ପଢ଼ି ବସିଲା ବେଳକୁ ଆପେ ଆପେ ଆଖି ବନ୍ଦ ହୋଇ-ଯାଏ । ତଥାପି ଲଣ୍ଠନ ଅଭାବରେ ଡିବିରି ଆଲୁଅରେ ତାଙ୍କୁ ପାଠ ପଢ଼ିବାକୁ ହିଁ ହୋଇଥାଏ ।

ନିଜର ପାଠପଢ଼ା ଖର୍ଚ୍ଚ ତୁଲାଇବା ପାଇଁ ପ୍ରେମଚନ୍ଦଙ୍କ ବାପା ତାଙ୍କୁ ମାସିକ ପାଞ୍ଚ ଟଙ୍କାରୁ ଅଧିକ ଦେଇ ପାରୁ ନ ଥିଲେ ।

ସେଥିରେ ଫିସ୍, ବହି, କାଗଜ, କଲମ ଠାରୁ ଆରମ୍ଭ କରି ଚପ୍ପଲ କମିଜ୍ ଓ ଫଟା ଯୋତା ସିଲାଇ ସୁଦ୍ଧା କରିବାକୁ ପଡୁଥିଲା । ସେହି ପଇସାରୁ ବେଳେବେଳେ ଖାଇବା ଜିନିଷ କିଣିବାକୁ ହେଉ-ଥିଲା । ଏଣୁ ପ୍ରତିମାସରେ ବହୁ କଷ୍ଟରେ ଟାଣଟୁଣ ହୋଇ ଚଳିବା ଅପେକ୍ଷା କିଛି ଅର୍ଥ ଉପାର୍ଜନ କରିବା ଉଦ୍ଦେଶ୍ୟରେ ପ୍ରେମଚନ୍ଦ ବନାରସରୁ ଫେରିବା ବାଟରେ ଜଣେ ପିଲାକୁ ଟିଉସନ୍ କରି ପ୍ରତି ମାସରେ ଦୁଇ ତିନି ଟଙ୍କା ରୋଜଗାର କଲେ । ଯେ କୌଣସି ପରିସ୍ଥିତି ବିରୁଦ୍ଧରେ ସଂଘର୍ଷ କରି ନିଜର ପାଠପଢ଼ା ଅବ୍ୟାହତ ରଖିବାକୁ ସେ ବଦ୍ଧ ପରିକର ହୋଇ ପଡ଼ିଥାନ୍ତି ।

## କୈଶୋର ଜୀବନ

ସେ କାଳରେ ଉତ୍ତର ଭାରତରେ ବାଲ୍ୟ-ବିବାହ ପ୍ରଚଳିତ ଥିଲା । ନିମ୍ନ ଜାତିର ଲୋକମାନେ କଅଁଳା ଶିଶୁକୁ କାଖରେ ଧରି ସେମାନଙ୍କ ବାହାଘର କରାଇ ଦେଉଥିଲେ । ପ୍ରେମଚନ୍ଦ ନବମ ଶ୍ରେଣୀରେ ପଢ଼ିଲା ବେଳକୁ ବନ୍ଧୁ-ବାନ୍ଧବମାନେ ତାଙ୍କ ବାପାଙ୍କୁ ଆଉ ବସାଇ ଉଠାଇ ଦେଲେ ନାହିଁ । ବିଶେଷତଃ ଅଜାଙ୍କର ପରା-ମର୍ଶରେ ବାପା ତାଙ୍କର ୧୫ ବର୍ଷ ବୟସରେ ପ୍ରେମଚନ୍ଦଙ୍କୁ ବିବାହ ବନ୍ଧନରେ ବାନ୍ଧି ଦେଲେ ।

ବାହାଘର ପରେ ପରେ ପ୍ରେମଚନ୍ଦ ବେଶ୍ କିଛି ଦିନ ଖୁସିରେ କଟାଇଲେ । କିନ୍ତୁ ପତ୍ନୀଙ୍କର କର୍କଶ ସ୍ୱଭାବ, ଦୁଷ୍ଟ ପ୍ରକୃତି ଓ ଦୁର୍ବ୍ୟବହାର ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ପ୍ରେମଚନ୍ଦଙ୍କ ଠାରୁ ବୟସରେ ବଡ଼, ଦେଖିବାକୁ ନିହାତି ଅସୁନ୍ଦର ତଥା

ଶିକ୍ଷା-ଦୀକ୍ଷାର ଘୋର ଅଭାବ ସାଙ୍ଗକୁ ତାଙ୍କର କଜିଆ ଖୋରଣୀ ପ୍ରକୃତି ହେତୁ ଘରେ ବିମାତାଙ୍କ ସହ ସବୁବେଳେ କଳିଗୋଳ ହେଲା । ପ୍ରେମଚନ୍ଦଙ୍କ ସରଳ, ଶାନ୍ତ ଜୀବନରେ ଏଭଳି ଅଶାନ୍ତିକୁ ସେ ଆଉ ବେଶି ଦିନ ପ୍ରଶ୍ରୟ ଦେଲେ ନାହିଁ ।

ଠିକ୍ ଏତିକିବେଳେ ମାତ୍ର ୫୬ ବର୍ଷ ବୟସରେ ପିତା ଅଜାୟବଲାଲଙ୍କର ବିୟୋଗ ଫଳରେ ପ୍ରେମଚନ୍ଦଙ୍କ ଉପରେ ବଜ୍ରପାତ ହେଲା । ବାଲ୍ୟକାଳରୁ ସେ ମା'ଙ୍କୁ ହରାଇ ସାରିଥାନ୍ତି । ଉଭୟଙ୍କ ଅନୁପସ୍ଥିତିରେ ସେ ଏଭଳି ଭାଙ୍ଗି ପଡ଼ିଥିଲେ ଯେ ସେ ବର୍ଷ ଆଉ ମାଟ୍ରିକ୍ ପରୀକ୍ଷା ଦେଇ ପାରି ନ ଥିଲେ । ତା ପରବର୍ଷ ପରୀକ୍ଷା ଦେଇ ସେ ମାତ୍ର ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଫଳରେ, ପ୍ରେମଚନ୍ଦଙ୍କର କଲେଜରେ ପଢ଼ିବା ଆଶା କ୍ରମଶଃ ମଉଳି ପଡ଼ିଥିଲା । କାରଣ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ନ ହେଲେ କଲେଜରେ ଫିସ୍ ଛାଡ଼ ପାଇବାର ସମ୍ଭାବନା ନ ଥିଲା ଏବଂ ପୁରା ଫିସ୍ ଦାଖଲ କରି ପାଠ ପଢ଼ିବାର ସାମର୍ଥ୍ୟ ତାଙ୍କର ନ ଥିଲା ।

## କଲେଜ ଶିକ୍ଷା

ବନାରସ ହିନ୍ଦୁ କଲେଜରେ ସେ ନାମ ଲେଖାଇଲେ । କିନ୍ତୁ ହିନ୍ଦୁ କଲେଜର ଇଂରାଜୀ ପ୍ରିନ୍ସପାଲ ଭାରି କଡ଼ା ମିଜାଜର ଲୋକ । ଗରିବ ପିଲାଙ୍କର ଗୁହାରି ଶୁଣିବାବାଲା ନୁହଁନ୍ତି । ଶେଷରେ ସହରର ଜଣେ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର ସୁପାରିଶ ଆଣିବାରୁ ପ୍ରେମଚନ୍ଦଙ୍କୁ ଦରମା ଛାଡ଼ ପରୀକ୍ଷାରେ ବସିବାକୁ ଅନୁମତି ମିଳିଲା । କିନ୍ତୁ ଗଣିତରେ ଅକୃତ କାର୍ଯ୍ୟ ହେବାରୁ ସମ୍ପୃକ୍ତ ଅଧ୍ୟାପକ ତାଙ୍କ ଦରଖାସ୍ତ ଉପରେ ସନ୍ତୋଷଜନକ ମନ୍ତବ୍ୟ ଦେଲେ ନାହିଁ ।

ତଥାପି ପ୍ରେମଚନ୍ଦ ସାହସ ହରାଇଲେ ନାହିଁ । ସହରରେ ରହି ପାଠ ପଢ଼ିବା ସଙ୍ଗେ ସଙ୍ଗେ କିଛି ରୋଜଗାର କରିବା ପାଇଁ ଉପାୟ ଚିନ୍ତା କଲେ । ଜଣେ ସହପାଠୀଙ୍କ ସାହାଯ୍ୟରେ ମାସିକ ପାଞ୍ଚଟଙ୍କାର ଟିଯୁସନ୍‌ଟିଏ ମିଳିଗଲା । ଜଣେ ଓକିଲବାବୁଙ୍କର ଘୋଡ଼ାଶାଳ ଉପରେ ଥିବା ବଖରାଏ ଗୁଳ ଘରେ ପ୍ରେମଚନ୍ଦଙ୍କର ରହିବା ବ୍ୟବସ୍ଥା ବି ହୋଇଗଲା । ଏଣେ ଗାଁରେ ତାଙ୍କର ପତ୍ନୀ ଓ ସାବତ ମା’ ! ଅତୀତରେ ତାଙ୍କ ପ୍ରତି ଯେତେ ଯାହା ଖରାପ ବ୍ୟବହାର କରିଥିଲେ ସୁଦ୍ଧା ତାଙ୍କ ଦାୟିତ୍ୱ ତ ତାଙ୍କୁ ହିଁ ନେବାକୁ ହେବ । ପ୍ରତି ମାସରେ ଟିୟୁସନ୍ ପଇସାରୁ କିଛି ଅଂଶ ପତ୍ନୀ ଓ ବିମାତାଙ୍କର ଭରଣ-ପୋଷଣ ପାଇଁ ଗାଁକୁ ପଠାଇବାକୁ ପଡ଼େ । ଏଣୁ ଏ ସମସ୍ତ ଖର୍ଚ୍ଚ ତୁଲାଇବା ପାଇଁ ବେଳେବେଳେ ପ୍ରେମ-ଚନ୍ଦଙ୍କୁ କିଛି କିଛି କରଜ କରିବାକୁ ପଡ଼ିଲା । କିନ୍ତୁ ତାଙ୍କ ଦାରିଦ୍ର୍ୟ ସଂପର୍କରେ ଅବହିତ ବ୍ୟକ୍ତି ତାଙ୍କୁ ଭଲା କେଉଁ ଭରସାରେ ଉଧାର ଦେବ ! ବେଳେବେଳେ ପାଖରେ ପଇସାଟିଏ ନ ଥିବାରୁ ପ୍ରେମ-ଚନ୍ଦଙ୍କୁ ଅନାହାରରେ କାଳ କାଟିବାକୁ ମଧ୍ୟ ପଡ଼ୁଥିଲା ।

କଥାରେ ଅଛି, ଅଭାବେ ସ୍ୱଭାବ ନଷ୍ଟ । ହଠାତ୍ ଏପରି ଅବସ୍ଥା ହେଲା ଯେ ଉତ୍କଟ ଆର୍ଥିକ ଅଭାବ ସହି ନ ପାରି ପ୍ରେମଚନ୍ଦ ନିଜର ଗଣିତ ପୁସ୍ତକର ପ୍ରଶ୍ନୋତ୍ତର ବହିଟିକୁ ନେଇ ଗୋଟିଏ ବହି ଦୋକାନରେ ବିକ୍ରି କରିଦେଲେ । ସେ ସମୟରେ ଯାଦବ-ଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ଦ୍ୱାରା ରଚିତ ସେହି ଗଣିତ ପୁସ୍ତକ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ପୁରୁଣା ବହିର ଦାମ୍ କେତେ ଆଉ ମିଳନ୍ତା ! ଟଙ୍କାଟିଏ ମିଳିଲା । ନାହିଁ ମାମୁଁଠାରୁ କଣା ମାମୁଁ ଭଲ । ପାଖରେ ଅଧଲାଟିଏ ନ ଥିଲା ବେଳେ ଟଙ୍କାଟିଏ ବି ପ୍ରେମଚନ୍ଦଙ୍କ ପାଇଁ କିଛି କମ୍ ନ ଥିଲା ।

# ଶିକ୍ଷକ ଜୀବନ

ବହୁ ବନ୍ଧି କଲାବେଳେ ସେହି ଦୋକାନରେ ଚୁନାରରେ ଥିବା ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ସହ ପ୍ରେମଚନ୍ଦଙ୍କର ଦେଖା ହେଲା । ପ୍ରଧାନ ଶିକ୍ଷକ ମହାଶୟ ତାଙ୍କ ସ୍କୁଲ ପାଇଁ ମାଟ୍ରିକ୍ ପାଶ୍ କରିଥିବା ଶିକ୍ଷକଟିଏ ଖୋଜୁଥିଲେ । ମାସିକ ଦରମା ଅଠର ଟଙ୍କା ।

ବୁଡ଼ିଯାଉଥିଲା ବେଳେ କୁଟାଖିଏ ମିଳିଗଲେ ଯେମିତି ଆଶ୍ୱସ୍ତି ଲାଗେ, ମାସିକ ଅଠର ଟଙ୍କା ବେତନର ଚାକିରି ଖଣ୍ଡିଏ ପାଇବା କଥା ଶୁଣି ପ୍ରେମଚନ୍ଦଙ୍କ ମନ ଆଶ୍ଚର୍ଯ୍ୟଭରା ଆନନ୍ଦରେ ଭରିଉଠିଲା । ସାଙ୍ଗେ ସାଙ୍ଗେ ପେଡ଼ି ପୁଟୁଳି ବାନ୍ଧି ବନାରସରୁ ଚୁନାର ଅଭିମୁଖେ ବାହାରି ପଡ଼ିଲେ । ସେଠି ନୂଆ ଚାକିରିରେ ଜଏନ୍ କରି ସେ ଅତ୍ୟନ୍ତ ଉତ୍ସାହ ସହକାରେ ନିଜ ଦାୟିତ୍ୱ ତୁଲାଇଲେ । ପିଲାଦିନର ଚଞ୍ଚଳତା ଆଉ ତାଙ୍କଠାରେ ନ ଥିଲା । ଏଣେ ପରିବାରର ବୋଝ ହେତୁ ପ୍ରେମଚନ୍ଦ ଟିଉସନ୍ କରି ଦି' ପଇସା ଅଧିକ ଉପାର୍ଜନ କରିବାକୁ ଲାଗିଲେ । କାର୍ଯ୍ୟଭାର ବଢ଼ିଗଲା, ତଥାପି ବେଳେବେଳେ ଧାର ଉଧାର ମଧ୍ୟ କରିବାକୁ ପଡ଼ୁଥାଏ । ଅନ୍ୟାୟ ବିରୁଦ୍ଧରେ ସାଲିସ୍ କରିବା ତାଙ୍କ ଜାତକରେ ନାହିଁ । ଏଭଳି କୌଣସି ଘଟଣାରେ ସ୍କୁଲ ମାଲିକଙ୍କ ସହିତ ତାଙ୍କର ମନୋମାଳିନ୍ୟ ଘଟିଲା । ପରିଣାମତଃ ପ୍ରେମଚନ୍ଦଙ୍କୁ ସେଠିକାର ଚାକିରି ଛାଡ଼ିବାକୁ ପଡ଼ିଲା । ଚାକିରି ଛାଡ଼ିବା ପରେ ଆଉ ଚୁନାରରେ କାହିଁକି ବା ରହନ୍ତେ ! ବର୍ଷକ ପରେ ପୁଣି ବନାରସ ଫେରି ଆସିଲେ । ସେଠି କୌଣସି ପ୍ରକାରେ ନିଜର ଗୁଜୁରାଣ ମେଣ୍ଟାଇବାକୁ ହେଲେ ତାଙ୍କୁ ଦୁଇଟଙ୍କାରେ ନିଜର ଗରମ କୋଟ ସୁଦ୍ଧା ବନ୍ଧି କରିବାକୁ ପଡ଼ିଥିଲା ।

ଏଭଳି ପରିସ୍ଥିତିରେ କାଳି କାଠି କାହିଁ ହଠାତ୍ କୁଇନ୍ସ କଲେଜର ପ୍ରିନ୍ସପାଲ ବେକନ୍ ସାହେବଙ୍କର ସୁପାରିଶ୍‌ରେ ବହ୍ୱାଇଚର ଜିଲ୍ଲା ସ୍କୁଲରେ ପଞ୍ଚମ ସହକାରୀ ଶିକ୍ଷକ ଭାବରେ ପ୍ରେମଚନ୍ଦଙ୍କୁ ନିଯୁକ୍ତି ମିଳିଗଲା । ମାସିକ ଦରମା କୋଡ଼ିଏ ଟଙ୍କା । ସେଠାରେ ଅଳ୍ପ କେତେ ଦିନ ରହିବା ପରେ ତାଙ୍କର ବଦଳି ପ୍ରତାପଗଡ଼ ସ୍କୁଲକୁ ହୋଇଗଲା ।

ପ୍ରତାପଗଡ଼ରେ ଶିକ୍ଷକତା କଲାବେଳେ ଲେଖାପଢ଼ା କରିବା ପାଇଁ ପ୍ରେମଚନ୍ଦଙ୍କୁ ବହୁତ ସୁଯୋଗ ମିଳିଲା । ଟିଯୁସନ୍ କରି ଦି’ ପଇସା ଅଧିକ ରୋଜଗାର ବି କରି ପାରୁଥିଲେ । ଜଣେ ଜମିଦାରଙ୍କ କୋଠିରେ ଏକୁଟିଆ ରହି ପଢ଼ାଲେଖା କରୁଥିଲେ । ପ୍ରତି ମାସରେ ଘରକୁ କିଛି କିଛି ଟଙ୍କା ପଠାନ୍ତି ।

ଏଥି ପୂର୍ବରୁ ପ୍ରେମଚନ୍ଦ ଯାହାସବୁ ପଢ଼ାଶୁଣା କରିଥିଲେ, ତାହା କେବଳ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ଥିଲା । ଏଣୁ ମନୋ-ରଞ୍ଜନ ସାଙ୍ଗକୁ ଜ୍ଞାନ ଅର୍ଜନ ପାଇଁ ସେ କିଛି ଗମ୍ଭୀର ସାହିତ୍ୟ ଅଧ୍ୟୟନ କରିବାକୁ ଚାହୁଁଥିଲେ । ଏହିଠାରେ ପ୍ରଥମ କରି ତାଙ୍କୁ ସେ ସୁଯୋଗ ମିଳିଲା । ସେ ଖୁବ୍ ଭଲ ଭାବରେ ସମାଜର ବିଭିନ୍ନ ସମସ୍ୟା ସଂପର୍କରେ ଅନୁଧ୍ୟାନ କଲେ ।

ସମାଜର ପ୍ରତିଟି ସ୍ତରରେ ତାଙ୍କୁ ନାନା ବ୍ୟଭିଚାର ଦେଖା-ଗଲା । ମହନ୍ତ, ପୂଜାରୀ, ବ୍ରାହ୍ମଣ, ଖଣ୍ଡାୟତ, ସେଠ, ସାହୁକାର ସମସ୍ତେ ଭ୍ରଷ୍ଟ ଓ ବିପଥଗାମୀ ହୋଇ ପଡ଼ିଛନ୍ତି । ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜାଘର ଭଳି ପବିତ୍ର ସ୍ଥଳ ଭ୍ରଷ୍ଟାଚାରର ଆଡ୍‌ଡ଼ାରେ ପରିଣତ ହୋଇ ପଡ଼ିଛି । ସମାଜ ସତେ ଯେମିତି କୀଟଦଂଷ୍ଟ ହୋଇ ସାରି-ଲାଣି । ଶୂଦ୍ର ଓ ନାରୀ ପ୍ରତି ନିର୍ଯ୍ୟାତନାର ଅନ୍ତ ନାହିଁ । ଧର୍ମୀକ

ବର୍ଗ ନିଜର ବିଳାସ-ବ୍ୟସନରେ ମସ୍‌ଗୁଲ ହୋଇ ରହିଲା ବେଳକୁ ଗରିବ ବାପୁଡ଼ା ଖାଇବାକୁ ନ ପାଇ ହାହାକାର କରୁଛି । କୁଲି, ମୂଲିଆଙ୍କୁ ତାଙ୍କ ପାରିଶ୍ରମିକ ଠିକ୍ ଭାବେ ମିଳୁନାହିଁ । ରୁଢ଼ିଗ୍ରସ୍ତ ସମାଜ ପ୍ରାଚୀନ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଜାବୁଡ଼ି ଧରି କଷ୍ଟ ପାଉଛି । ଅନ୍ୟାୟୀ, ଅତ୍ୟାଗ୍ରହୀ ମୁଣ୍ଡ ଟେକି ଚାଲିଲା ବେଳକୁ ଧାର୍ମିକ ଲୋକେ ନାନା ବାଧା-ବିଘ୍ନର ସମ୍ମୁଖୀନ ହେଉଛନ୍ତି । ଏଣେ ବିଦେଶୀ ଶାସନରେ ବହୁ ଧନ, ଦରବ ଆମ ଦେଶରୁ ବୁହା ହୋଇ ଦେଶ ବାହାରକୁ ଯିବାରେ ଲାଗିଛି ।

ପ୍ରେମଚନ୍ଦ ଖୁବ୍ ଧ୍ୟାନପୂର୍ବକ ତତ୍କାଳୀନ ସମାଜ ପ୍ରତି ଦୃଷ୍ଟି ନିକ୍ଷେପ କରି ଜାଣିପାରିଲେ ଯେ, ସମାଜରେ କୃଷକମାନଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଛି । ଉତ୍କଟ ଦାରିଦ୍ର୍ୟ ସାଙ୍ଗକୁ ଜମିଦାରର ଦୌରାତ୍ମ୍ୟ ଫଳରେ ଭାରଗ୍ରସ୍ତ କୃଷକର ମେରୁଦଣ୍ଡ ଭାଙ୍ଗି ପଡ଼ିଥିଲା । ରାଜା ସାହେବଙ୍କର ବେଠି କରିବା ସଙ୍ଗେ ସଙ୍ଗେ ସାହୁକାର ଶୋଷଣକୁ ମୁଣ୍ଡପାତି ସହିନେବା ଯେମିତି ତା'ର ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଯାଇଥିଲା ।

ସମାଜର ଏଭଳି ଦୟନୀୟ ଦଶା ଦେଖି ପ୍ରେମଚନ୍ଦଙ୍କ ହୃଦୟ କାନ୍ଦି ଉଠିଲା । ସେ କ'ଣ ଅବା କରିପାରନ୍ତେ ! ତାଙ୍କ ହାତରେ କୌଣସି ପ୍ରଶାସନିକ କ୍ଷମତା ନାହିଁ କିମ୍ବା ସେ ଯେମିତି କୌଣସି ପଦସ୍ଥ ଅଫିସର୍ ନୁହଁନ୍ତି ଯେ, ସମାଜରେ ଦେଖା ଦେଇଥିବା ସମସ୍ୟାର ସମାଧାନ କରିଦେବେ !! ତାହାହେଲେ କପରି ଭାବରେ ସାମାଜିକ ପରିସ୍ଥିତିର ଉନ୍ନତି ସାଧନ କରାଯାଇପାରିବ, ସମାଜକୁ ସୁସ୍ଥ, ସବଳ କରି ଗଢ଼ାଯାଇ ପାରିବ ?

ପ୍ରେମଚନ୍ଦଙ୍କର କଲମ ଖଣ୍ଡିକ ତାଙ୍କର ଅମୋଘ ଅସ୍ତ୍ର ଥିଲା । ତା ଉପରେ ସେ ଖୁବ୍ ଆସ୍ଥାବାନ୍ । ଭାବିଲେ, ସେ ତାଙ୍କ କଲମ ମୂନରେ ସାମାଜିକ ଦୁଃଖ-ଦୁର୍ଦ୍ଦଶାର କରୁଣ ଚିତ୍ର ଅଙ୍କନ କରିବେ । ସମାଜ ଯେତେବେଳେ ନିଜର ହାହାକାରମୟ ଅସହାୟ ରୂପ ଦେଖିବ, କିଛି ତ ପ୍ରତିକ୍ରିୟା ସୃଷ୍ଟି ହେବ ! ସମାଜରେ ଜାଗୃତି ଆଣିବା ଶ୍ରମସାଧ୍ୟ ନିଶ୍ଚୟ, ହେଲେ ଅସମ୍ଭବ ନୁହେଁ ।

କଲମ ସବୁ କଥା କହିଯିବ । ଗଳ୍ପ, ଉପନ୍ୟାସ ମାଧ୍ୟମରେ ସମାଜରେ ଏହି ବ୍ୟଥା-କଥା ସମାଜ ଆଗରେ ଥୋଇବା ପାଇଁ ପ୍ରେମଚନ୍ଦ ସ୍ଥିର କଲେ । ସାମାଜିକ ଦୋଷ-ଦୁର୍ବଳତା ଉପରେ କୁଠାରାଘାତ କରିବା ଉଚିତ । ଏଠି ମଣିଷ ମଣିଷ ଭିତରେ ହିଂସା, କପଟ, ଘୃଣା, ଶତ୍ରୁତା ଲାଗିରହିଛି । ଶାଗଖିଆକୁ ପେଜଖିଆ ସହି-ପାରୁନି । ଛନ୍ଦ, ଈର୍ଷା, ଦ୍ୱେଷ ଭଳି ନାରକୀୟ ପ୍ରବୃତ୍ତି ସମାଜରେ ଘର କରିଗଲାଣି । ଏସବୁକୁ ସମୂଳେ ବିନାଶ କରି ସାମାଜିକ ପରିଷ୍କରଣ କରିବାକୁ ହେଲେ ଅକ୍ଳାନ୍ତ ପରିଶ୍ରମ କରିବାକୁ ହେବ ।

ବିଧିର ବିଧାନ ଅନ୍ୟ ପ୍ରକାରର । ୧୯୦୮-୧୨ ମସିହାର କଥା । ତତ୍କାଳୀନ ଇଂରେଜ ଶାସନରେ ଭାରତର ଦୁର୍ଦ୍ଦଶାକୁ ପୃଷ୍ଠଭୂମି କରି ନବାବ ରାୟ ୫ ଗୋଟି ଗଳ୍ପର ସଂକଳନଟିଏ 'ସୋଜେ ବତନ୍' ନାଁରେ ପ୍ରକାଶ କଲେ । ଗଳ୍ପଗୁଡ଼ିକ ଏତେଦୂର ମନଛୁଆଁ ହୋଇଥିଲା ଯେ, ସମସ୍ତେ ତା'ର ଭୂରି ଭୂରି ପ୍ରଶଂସା କଲେ । ପତ୍ର-ପତ୍ରିକାମାନଙ୍କରେ ତାହା ଉଚ୍ଚ ପ୍ରଶଂସିତ ହେଲା । ଏପରିକି ଆଚାର୍ଯ୍ୟ ମହାବୀର ପ୍ରସାଦ ଦ୍ୱିବେଦୀଙ୍କ ଭଳି ବୟୋ-ଜ୍ୟେଷ୍ଠ ସାହିତ୍ୟିକ ମଧ୍ୟ 'ସରସ୍ୱତୀ' ପତ୍ରିକାରେ ତା'ର ସମୀକ୍ଷା

ଲେଖିଲେ । କ୍ରମଶଃ ଏ କଥା ଯାଇ ଇଂରେଜ ସରକାରଙ୍କ କାନରେ ପଡ଼ିଲା । ୧୯୧୦ ମସିହାରେ ଲକ୍ଷ୍ନୌର ତତ୍କାଳୀନ କଲ୍ଲାପାଳ ଏଥିପାଇଁ ନବାବ ରାୟଙ୍କ ଉପରେ ରାଜଦ୍ରୋହ ଆରୋପ କରି ସମସ୍ତ 'ସୋଜେ ବତନ୍' ପୁସ୍ତକ ସହ ହାଜର ହେବା ପାଇଁ ହୁକୁମ ଦେଲେ । ତାଙ୍କ ଆଦେଶରେ ବହିଗୁଡ଼ିକୁ ପୋଡ଼ି ଦିଆଗଲା ଏବଂ ଭବିଷ୍ୟତରେ ଆଉ ପଦେହେଲେ କେଉଁଠି ନ ଲେଖିବାକୁ କଡ଼ା ତାଗିଦ୍ କରିଦିଆଗଲା ।

କିନ୍ତୁ ଲେଖାଲେଖି ନ କରି ବଞ୍ଚି ରହିବା ନବାବ ରାୟଙ୍କ ପକ୍ଷରେ ସମ୍ଭବ ନ ଥିଲା । ସେ କେତେବେଳେ ଛଦ୍ମ ନାମରେ ଲେଖିଲେ ତ କେତେବେଳେ କୌଣସି ନାଁ ନ ଦେଇ ଲେଖି ଚାଲିଲେ । କିନ୍ତୁ ହଠାତ୍ ସେଇ ବର୍ଷ 'ଜମାନା' ପତ୍ରିକାର ତତ୍କାଳୀନ ସମ୍ପାଦକ ତଥା ତାଙ୍କର ବାଲ୍ୟବନ୍ଧୁ ମୁନ୍‌ସୀ ଦୟା-ନାରାୟଣ ନିଗମଙ୍କ ପରାମର୍ଶକ୍ରମେ 'ପ୍ରେମଚନ୍ଦ' ନାମ ଗ୍ରହଣ କଲେ ଏବଂ ସେହିଦିନଠାରୁ ସେ ତାଙ୍କର ସମସ୍ତ ଲେଖାଲେଖି ପ୍ରେମଚନ୍ଦ ନାଁରେ କଲେ ତଥା ସବୁଦିନ ସେଇ ନାଁରେ ପରିଚିତ ହେଲେ ।

ଏତିକିବେଳେ ପ୍ରେମଚନ୍ଦ ଏଲାହାବାଦରୁ ଶିକ୍ଷକ ତାଲିମ୍ ପ୍ରାପ୍ତ ହେଲେ । ଲେଖାପଢ଼ା ନିରନ୍ତର ଚାଲିଥାଏ । ସେ ନବାବ ରାୟ ନାମରେ କେବଳ ଉର୍ଦ୍ଦୁ ଭାଷାରେ ହିଁ ଲେଖୁଥାନ୍ତି ଯଦିଓ କାଗଜପତ୍ରରେ ସେ ଧନପତ୍ ରାୟ ନାମରେ ପରିଚିତ ଥିଲେ । ବନାରସରୁ ପ୍ରକାଶିତ ସାପ୍ତାହିକ ଉର୍ଦ୍ଦୁ ପତ୍ରିକା 'ଆଁବାଜ୍-ଏ-ଖଲ୍‌କ'ରେ 'ଅସରାରେ ମଆବିଦ ଉର୍ଫ ଦେବସ୍ଥାନ ରହସ୍ୟ' ନାମକ ତାଙ୍କର ପ୍ରଥମ ଉର୍ଦ୍ଦୁ ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶିତ ହେଲା । ଏଥିରେ ପଣ୍ଡା, ପୂଜାରୀ ତଥା ମଠ ମହନ୍ତ-

ମାନଙ୍କର କୁ-କୃତ୍ୟର ବର୍ଣ୍ଣନା କରାଯାଇଛି । ସେତେବେଳେ ଉର୍ଦ୍ଦୁ ପାଠକଙ୍କ ସଂଖ୍ୟା କମ୍ ନ ଥିଲା । ସେମାନଙ୍କ ମଧ୍ୟରେ ପ୍ରେମଚନ୍ଦ ଖୁବ୍ ଆଦୃତ ହେଲେ ।

ଏଲାହାବାଦ୍‌ରୁ ତାଲିମପ୍ରାପ୍ତ ହୋଇ ପ୍ରେମଚନ୍ଦ ପୁଣି ପ୍ରତାପ-ଗଡ଼ ଫେରି ସ୍କୁଲରେ ଜଏନ୍ କଲେ । ସେଠାରେ ମାତ୍ର କିଛି ଦିନ ରହିବା ପରେ ଏଲାହାବାଦ୍‌ସ୍ଥିତ ମଡ଼େଲ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ତାଙ୍କୁ ନିଯୁକ୍ତି ମିଳିଲା । ସେଠାରେ ମାଷ କିଛି କାଳ କାର୍ଯ୍ୟ କରିବା ପରେ ପରେ ସେ କାନପୁରସ୍ଥିତ ସରକାରୀ ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଲେ ।

କାନପୁରରୁ 'ଜମାନା' ନାମକ ଲୋକପ୍ରିୟ ଉର୍ଦ୍ଦୁ ପତ୍ରିକାଟି ପ୍ରକାଶ ପାଉଥିଲା । ପ୍ରେମଚନ୍ଦ ସେଥିରେ ଲେଖାଲେଖି ଆରମ୍ଭ କଲେ । ଏ ସନ୍ଧାନରେ ପତ୍ରିକାର ସଂପାଦକ ମୁନ୍‌ସୀ ଦୟା-ନାରାୟଣ ନିଗମଙ୍କ ସହିତ ତାଙ୍କର ପରିଚୟ ହେଲା । ଉଭୟେ ପରସ୍ପରର ବ୍ୟକ୍ତିତ୍ୱ ଦ୍ୱାରା ଏତେ ଦୂର ପ୍ରଭାବିତ ହେଲେ ଯେ, ସାଧାରଣ ପରିଚୟ କ୍ରମଶଃ ପ୍ରଗାଢ଼ ବନ୍ଧୁତ୍ୱରେ ପରିଣତ ହେଲା । ନିଜ ସାହିତ୍ୟିକ ଜୀବନର ପ୍ରାରମ୍ଭିକ କାଳରେ ବନ୍ଧୁ ନିଗମଙ୍କଠାରୁ ପ୍ରେମଚନ୍ଦଙ୍କୁ ଅଭୂତପୂର୍ବ ପ୍ରେରଣା ମିଳିଲା । ତା'ଛଡ଼ା 'ଜମାନା' କାର୍ଯ୍ୟାଳୟ ମଧ୍ୟ ଉର୍ଦ୍ଦୁ ସାହିତ୍ୟିକଙ୍କର ମିଳନ-ସ୍ଥଳୀ ଭାବରେ ପ୍ରେମଚନ୍ଦଙ୍କୁ ତାଙ୍କ ମନଲାଖି ଏକ ମନୋରମ ସାହିତ୍ୟିକ ପରିବେଶ ପ୍ରଦାନ କରିଥିଲା । ନିଜର ଦାରିଦ୍ର୍ୟ ତଥା ଗାଁରେ ପତ୍ନୀ ଓ ବିମାତାଙ୍କ ମଧ୍ୟରେ ନିୟମିତ ଘଟୁଥିବା ପାରିବାରିକ କଳହ ଜନିତ ଦୁଃଖକୁ ପ୍ରେମଚନ୍ଦ ଏଭଳି ସାହିତ୍ୟିକ ବାତାବରଣରେ ରହି ପ୍ରାୟ ଭୁଲି

ଯାଉଥିଲେ । ଲମ୍ବା ଛୁଟିମାନଙ୍କରେ ଘରକୁ ଗଲେ ସୁଦ୍ଧା ସେଠି-କାର ପ୍ରତିକୂଳ ପରିବେଶରେ ବେଶୀକାଳ ରହି ନ ପାରି ସେ ଖୁବ୍ ଶୀଘ୍ର ସହରକୁ ଫେରି ଆସୁଥିଲେ ।

ଦିନକର ଘଟଣା । ଛୁଟିରେ ପ୍ରେମଚନ୍ଦ ଲମହି ଯାଇଥାନ୍ତି । ଶାଶୁ-ବୋହୂଙ୍କ ମଧ୍ୟରେ ଭୟଙ୍କର କଳି ହେଲା । ଅବସ୍ଥା ଏପରି ହେଲା ଯେ, ପ୍ରେମଚନ୍ଦଙ୍କ ପତ୍ନୀ ବେକରେ ଦଉଡ଼ି ଲଗାଇ ଆତ୍ମ-ହତ୍ୟା କରିବାକୁ ଉଦ୍ୟତ ହେଲେ । କେହି ଜଣେ ଦେଖିଦେବାରୁ ତାଙ୍କର ସେ ଉଦ୍ୟମ ପଣ୍ଡ ହୋଇଗଲା । ଏଥିରେ ବିରକ୍ତ ହୋଇ ପ୍ରେମଚନ୍ଦ ତାଙ୍କୁ ଖୁଷଣ ଗାଳି ଦେଲେ । ପତ୍ନୀଙ୍କର ଏକା ଜିଦ୍— ସେ ଆଉ ଏଠି ରହିବେ ନାହିଁ, ତାଙ୍କ ବାପଘରକୁ ଚାଲିଯିବେ । ମନ୍ଦ ଖୋଜୁଥିଲା ଯାହା, ବଇଦ କହିଲା ତାହା । ପ୍ରେମଚନ୍ଦ ବି ମନେ ମନେ ସେଇୟା ଚାହୁଁଥିଲେ । କାରଣ ନିତି ରାତି ପାହିଲା କ୍ଷଣି ତାଙ୍କର ଆଉ କଟୂ ଭର୍ତ୍ସନା ତ ଶୁଣିବାକୁ ପଡ଼ିବନି ! ବାପଘରକୁ ଯିବା ପାଇଁ ତାଙ୍କର ସମସ୍ତ ବ୍ୟବସ୍ଥା କରି ପରିବାରର ଜଣେ ସମ୍ପର୍କୀୟଙ୍କ ସହିତ ପଠାଇ ଦେଲେ । ସେହିଦିନଠାରୁ ତାଙ୍କ ସହିତ ପ୍ରେମଚନ୍ଦଙ୍କର ସମସ୍ତ ବୈବାହିକ ସମ୍ପର୍କ ଛିନ୍ନ ହୋଇଯାଇଥିଲା ।

## ସମାଜ ସଂସ୍କାରକ ପ୍ରେମଚନ୍ଦ

ନିଜର ଗଳ୍ପ ଓ ଉପନ୍ୟାସମାନଙ୍କରେ ପ୍ରେମଚନ୍ଦ ନାରୀ ଉଦ୍ଧାର ସପକ୍ଷରେ ବହୁ ଯୁକ୍ତି ଉତ୍ଥାପନ କରୁଥାନ୍ତି । କିନ୍ତୁ ନିଜର ଦ୍ୱିତୀୟ ବିବାହ ସମ୍ପର୍କରେ କେହି କେହି ପ୍ରଶ୍ନ ଉଠାଇଲେ, ସେ

ତାଙ୍କୁ ଚତୁରତାର ସହିତ ଏଡ଼ାଇ ଯାଉଥାନ୍ତି । କିନ୍ତୁ କେତେ ଦିନ ଆଉ ଏଭଳି ଟାଳଟୂଳ କରନ୍ତେ ! ତତ୍କାଳୀନ ବୁଦ୍ଧିଜୀବୀ, ସମାଜ ସଂସ୍କାରକଙ୍କ ସହିତ ତାଳ ଦେଇ ପ୍ରେମଚନ୍ଦ ମଧ୍ୟ ତାଙ୍କ ସାହିତ୍ୟରେ ବାଲ୍ୟ-ବିବାହ ବିରୋଧୀ ଏବଂ ବିଧବା-ବିବାହ ସପକ୍ଷରେ ଧ୍ୱନିମାନ ଦେଉଥିଲେ । ତାକୁ ବ୍ୟାବହାରିକ କ୍ଷେତ୍ରରେ ପ୍ରୟୋଗ କରି ଦେଖାଇଦେବା ପାଇଁ ସେ ନିଜେ କୌଣସି ବିଧବା ସହିତ ବିବାହ କରିବାକୁ ସ୍ଥିର କଲେ । ଠିକ୍ ଏତିକବେଳେ ଫତେପୁର ନିବାସୀ ମୁନ୍‌ସୀ ଦେବୀପ୍ରସାଦ ନିଜର ବାଲ୍ୟ-ବିଧବା କନ୍ୟାର ବିବାହ ପାଇଁ ଖବରକାଗଜରେ ବିଜ୍ଞାପନ ଦେଇଥିଲେ । ତତ୍କାଳୀନ ସମାଜରେ ବିଧବା-ବିବାହ ଆଦୌ ନ ଥିଲି କହିଲେ ଚଳେ । ବରଂ ରୂଢ଼ିବାଦୀ ସମାଜ ଏଭଳି ପ୍ରଗତିଶୀଳ ବିଚାରର ତୀବ୍ର ବିରୋଧ କରୁଥିଲା । ପ୍ରେମଚନ୍ଦ ଏବଂ ଦେବୀପ୍ରସାଦ ଉଭୟଙ୍କର ସତ୍‌ସାହସ ଏବଂ ଦୃଢ଼ ମନୋବଳ ଯୋଗୁଁ ୧୯୦୬ ମସିହା ଶିବରାତ୍ରି ଦିନ ବିବାହ ସମ୍ପନ୍ନ ହେଲା । ପ୍ରେମଚନ୍ଦ ମନେ ମନେ ଯେଉଁ ଭଳି ପତ୍ନୀଟିର କଳ୍ପନା କରିଥିଲେ, ଶିବରାଣୀ ଦେବୀ ଠିକ୍ ସେହିଭଳି ଉପଯୁକ୍ତା ଜୀବନ-ସାଥୀ ବିବେଚିତ ହେଲେ ।

## ଦେଶପ୍ରେମୀ ପ୍ରେମଚନ୍ଦ

ପ୍ରତିଦିନ ଖବରକାଗଜ ପଢ଼ିବା ଓ ଦେଶ-ବିଦେଶର ସମାଚାର ଉପରେ ନିଜର ପ୍ରତିକ୍ରିୟା ବ୍ୟକ୍ତ କରିବା ପ୍ରେମଚନ୍ଦଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । 'ଜମାନା' ପତ୍ରିକାରେ 'ରଫ୍‌ତାରେ ଜମାନା' ନାମକ ଗୋଟିଏ ସ୍ଥାୟୀ ସ୍ତମ୍ଭରେ 'ସାମୟିକ ଘଟଣାବଳୀ ଉପରେ ସେ ନିୟମିତ ଲେଖୁଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦ

ଯାଏ ଶିକ୍ଷକ ଭାବରେ ପ୍ରେମଚନ୍ଦ କାନପୁରରେ ଅବସ୍ଥାନ କରିଥିଲେ ।

ସେତେବେଳେ ସମସ୍ତ ଦେଶରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ଆବାଳବୃଦ୍ଧବନିତା ସମସ୍ତଙ୍କ ମନରେ ଦେଶକୁ ସ୍ୱାଧୀନ କରିବା ପାଇଁ ଅପୂର୍ବ ଉତ୍ସାହ ଦେଖା ଦେଇଥାଏ । ସ୍ୱାଧୀନତାକୁ ଦେଶବାସୀ ନିଜର ଜନ୍ମସିଦ୍ଧ ଅଧିକାର ଭାବରେ ଗ୍ରହଣ କରିନେଇଥାନ୍ତି । ବିଦେଶୀ ଶାସନର କୁପରିଣାମ କାହାକୁ ଅଛପା ନ ଥିଲା । ଶାସକ ଗୋଷ୍ଠୀ ଏ ଦେଶର ସର୍ବସ୍ୱ ଅପହରଣ କରି ଦେଶବାସୀଙ୍କୁ ପଶୁଠାରୁ ଆହୁରି ହୀନ ଦୃଷ୍ଟିରେ ଦେଖୁଥାନ୍ତି, ପରାଧୀନ ଜାତି ବୋଲି ପ୍ରତି ସ୍ତରରେ ଭାରତୀୟମାନଙ୍କୁ ଅପମାନିତ କରି ଚାଲିଥାନ୍ତି ।

ଜନସାଧାରଣଙ୍କ ମନରେ ଦେଶପ୍ରେମର ଭାବ ସଂଚାର କରିବା ସଙ୍ଗେ ସଙ୍ଗେ ସେମାନେ ଯେମିତି ହୀନମନ୍ୟତାର ଶିକାର ନ ହୁଅନ୍ତି, ସେଥିପ୍ରତି ଦେଶର ବିଶିଷ୍ଟ ନେତୃବୃନ୍ଦ ବିଶେଷ ଦୃଷ୍ଟି ରଖିଥାନ୍ତି । ଗୋପାଳକୃଷ୍ଣ ଗୋଖଲେଙ୍କ ଭଳି ମହାତ୍ମାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ବହୁ ବୁଦ୍ଧିଜୀବୀ, ସମାଜସେବୀ ଜନଜାଗରଣ ପାଇଁ କାର୍ଯ୍ୟ କରୁଥାନ୍ତି । ସ୍ୱୟଂ ପ୍ରେମଚନ୍ଦ ମଧ୍ୟ ଗୋଖଲେଙ୍କ ଆଦର୍ଶରେ ପ୍ରଭାବିତ ହୋଇଥିଲେ ।

୧୮୮୫ ମସିହାରୁ ଭାରତୀୟ ଜାତୀୟ କଂଗ୍ରେସର ସ୍ଥାପନା ହୋଇ ସାରିଥାଏ । ସ୍ୱାଧୀନତା-ପ୍ରାପ୍ତି ପାଇଁ କାମ କରୁଥିଲେ ହେଁ କାର୍ଯ୍ୟ-ପ୍ରଣାଳୀ ନେଇ କଂଗ୍ରେସ ଚରମ ଦଳ ଓ ନରମ ଦଳ ନାମକ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା । ପ୍ରେମଚନ୍ଦଙ୍କ

ମତରେ ଭିକ୍ଷାଥାଳ ଧରି ମାଗିଲେ ସ୍ୱରାଜ୍ୟ ମିଳିବ ନାହିଁ । ଜୀବନକୁ ପାଣି ଛଡ଼ାଇ ତାକୁ ହାସଲ କରିବାକୁ ହେବ । ଭିକ୍ଷାମଣି ଜରିଆରେ ଇଂରେଜ ସରକାର ଆମକୁ ସ୍ୱାଧୀନତା ଫେରାଇ ଦେବ ନାହିଁ ।

ଦେଶସାରା ସ୍ୱାଧୀନତା-ସଂଗ୍ରାମର ମେଘ ଛାଙ୍କି ହୋଇ ରହିଛି । ଦେଶ-ମାତୃକାର ମୁକ୍ତି ପାଇଁ କେହି ଗଳା ଫଟାଇ ଭାଷଣ ଦେଉଛି ତ ଆଉ କେହି କୌଣସି ସଙ୍ଗଠନ ଜରିଆରେ ଅଧିକାର ସାବ୍ୟସ୍ତ କରିବାକୁ ଚାହୁଁଛି । ଠିକ୍ ଏତିକବେଳେ ପ୍ରେମଚନ୍ଦ ତାଙ୍କର ପ୍ରଥମ ଗଳ୍ପ 'ଦୁନିଆଁ କା ସବ୍‌ସେ ଅନ୍‌ମୋଲ୍ ରତ୍ନ' ଲେଖି ଜନସଚେତନତା ସୃଷ୍ଟି କରିବାର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ କଲେ । ସେତେବେଳେ ଭାରତୀୟଙ୍କ ଭିତରେ ସ୍ୱରାଜ୍ୟ-ଆନ୍ଦୋଳନର ଏଭଳି ଜୁଆର ଉଠିଥିଲା ଯେ, ସମସ୍ତେ ଯେଝା ଶକ୍ତି ମୁତାବକ ନିଜ ନିଜ କ୍ଷେତ୍ରରେ ମୁକ୍ତିର ମଶାଲ ଜାଳିବାକୁ ପ୍ରୟାସ କରୁଥିଲେ ।

ପଶ୍ଚିମବଙ୍ଗର ଜଣେ ତେଜସ୍ୱୀ ବାଳକ ଖୁଦିରାମ ବୋଷ, ନିଜ ଦେଶ-ମାତୃକାର ମୁକ୍ତି ଲାଗି ଜୀବନକୁ ବାଜି ଲଗାଇ ଝାସ ଦେଇଥାଏ ସ୍ୱାଧୀନତା ସଂଗ୍ରାମରେ । ପୂର୍ବରୁ ଏହି ସ୍ୱରାଜ୍ୟ-ଯଜ୍ଞରେ ଆହୁତି ଦେଇଥିବା ବିପ୍ଳବୀମାନେ ଥିଲେ ତା'ର ଆଦର୍ଶ । ପନ୍ଦର ବର୍ଷୀୟ ଏହି ଅଗ୍ନି ସ୍ଫୁଲିଙ୍ଗ ଦୁର୍ଦ୍ଧର୍ଷ ବାଳକ ବ୍ରିଟିଶ୍ ବାହିନୀ ମଧ୍ୟରେ ଗଭୀର ଆତଙ୍କ ସୃଷ୍ଟି କରି ଦେଇଥିଲା । ଏଣୁ କୌଶଳରେ ଧରିନେଇ ଇଂରେଜ ସରକାର ତାକୁ ୧୯୦୮ ମସିହା ଅଗଷ୍ଟ ୧୧ ତାରିଖରେ ଫାଶି ଦେଇଥିଲେ ।

ଏହି ଘଟଣାରେ ପ୍ରେମଚନ୍ଦ ଏତେଦୂର ପ୍ରଭାବିତ ହେଲେ ଯେ, ଶହୀଦ୍ ଖୁଦିରାମ ବୋଷର ଚିତ୍ରପଟଟିଏ ଆଣି କାନ୍ଥରେ ଟଙ୍ଗାଇ ସେଥିରେ ଫୁଲ ଚଢ଼ାଇ ସମ୍ମାନ ଜଣାଇଲେ । ବିପ୍ଳବୀ ଖୁଦିରାମ ଅତ୍ୟାଗ୍ଭଗୀ ଇଂରେଜ ଶାସକର ଶତ୍ରୁ ଥିଲା । ନିର୍ଭୀକତା, ସାହସ, ତ୍ୟାଗ ଓ ଦେଶ ପ୍ରେମ ଯୋଗୁଁ ସେ ପ୍ରେମଚନ୍ଦଙ୍କ ହୃଦୟରେ ସର୍ବୋଚ୍ଚସ୍ଥାନ ଅଧିକାର କରିପାରିଥିଲା ।

ଏତଦ୍‌ବ୍ୟତୀତ ସ୍ୱାମୀ ବିବେକାନନ୍ଦଙ୍କ ପ୍ରତି ପ୍ରେମଚନ୍ଦଙ୍କର ଅସୀମ ସମ୍ମାନ ଥିଲା । ଆମେରିକାରେ ଭାରତୀୟଙ୍କ ମହାନ୍ ଆଦର୍ଶ ଉପସ୍ଥାପିତ କରିବା ଠାରୁ ଆରମ୍ଭ କରି ଭାରତର ପୁରପଲ୍ଲୀ, ନଗର, ସହର ସର୍ବତ୍ର ଜାଗରଣର ସନ୍ଦେଶ ଶୁଣାଇ ବିବେକାନନ୍ଦ ଏ ଜାତିକୁ ଶ୍ରମ, ସାହସ, ସମ୍ମାନ ଓ ସ୍ୱାବଲମ୍ବନର ମହାମନ୍ତ୍ର ଦେଇ ଯାଇଛନ୍ତି ।

କ୍ରମଶଃ ବାଳଗଙ୍ଗାଧର ତିଲକଙ୍କ ଆଦର୍ଶ ପ୍ରେମଚନ୍ଦଙ୍କୁ ଉଦ୍-ବୁଦ୍ଧ କଲା । ସ୍ୱରାଜ୍ୟ-ପ୍ରାପ୍ତି ଲାଗି ସମାଜ ଓ ରାଜନୀତି କ୍ଷେତ୍ରରେ କାର୍ଯ୍ୟ କରୁଥିବା ମହାନ୍ ଦେଶସେବୀଙ୍କ ଗତିବିଧି ଲକ୍ଷ୍ୟ କରି ସାହିତ୍ୟ କ୍ଷେତ୍ରରେ ମଧ୍ୟ ପ୍ରେମଚନ୍ଦ ଅନୁରୂପ ଉଦ୍ୟମରେ ଅଧିକ ତତ୍ପର ହେଲେ । ଏତିକିବେଳେ 'ସୋଜେ ବତନ୍' ନାମକ ଗଳ୍ପ-ସଂକଳନର ଜନ୍ମ, ଯେଉଁଥିପାଇଁ ଇଂରେଜ ସରକାରଙ୍କ ଚକ୍ଷୁଶୂଳ ହୋଇ 'ନବାବ୍ ରାୟ'ର କବର ଉପରେ 'ପ୍ରେମଚନ୍ଦ'ର ତାଜମହଲ ଗଢ଼ି ଉଠିଥିଲା ।

କାନପୁରର ସାମାଜିକ ଓ ସାହିତ୍ୟିକ ଜୀବନ ସହିତ ପ୍ରେମ-ଚନ୍ଦ ଏତେଦୂର ଜଡ଼ିତ ହୋଇ ଯାଇଥିଲେ ଯେ, କାନପୁର ଛାଡ଼ି ଅନ୍ୟତ୍ର ଯିବାକୁ ଆଦୌ ଇଚ୍ଛୁକ ନ ଥିଲେ । ୧୯୦୯ ମସିହାରେ

ସରକାରୀ ଶିକ୍ଷକରୁ ପଦୋନ୍ନତି ପାଇ ହମୀରପୁର ଜିଲ୍ଲାର ସବ୍-ଡେପୁଟି ଇନ୍‌ସପେକ୍ଟର ଭାବରେ ତାଙ୍କର ନିଯୁକ୍ତି ହେଲା । କ'ଣ କରିବେ, ଚାକିରୀ କରିଛନ୍ତି ଯେତେବେଳେ, ଯିବାକୁ ହିଁ ହେବ । କାନପୁର ଠାରୁ ହମୀରପୁର ବେଶୀ ଦୂର ନୁହେଁ । ମଝି-ମଝିରେ କାନପୁର ଆସି ବନ୍ଧୁମାନଙ୍କୁ ଭେଟି ହେବ ।

ପ୍ରେମଚନ୍ଦ ଆଉ ସ୍କୁଲ୍ ଶିକ୍ଷକ ନୁହନ୍ତି । ବର୍ତ୍ତମାନ ସେ ଶିକ୍ଷା ବିଭାଗର ଜଣେ ହାକିମ । ହମୀରପୁର ଅଞ୍ଚଳରେ ଗସ୍ତ କରି ଶିକ୍ଷାନୁଷ୍ଠାନମାନ ତନଖି କରି ଦେଖିବା ତାଙ୍କର କାମ । ଗରିବ, ଅସହାୟ, ଅଶିକ୍ଷିତ, ଗ୍ରାମବାସୀଙ୍କର ପିଲାମାନେ ଭଲ ଭାବରେ ଶିକ୍ଷା ପାଉଛନ୍ତି କି ନାହିଁ, ଶିକ୍ଷକମାନେ ସେମାନଙ୍କୁ କି ପ୍ରକାର ସହାୟତା କରୁଛନ୍ତି, ଏସବୁ ନିରୀକ୍ଷଣ କରି ଦେଖିବା ସଙ୍ଗେ ସଙ୍ଗେ ଶିକ୍ଷକ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଥିବା ଅଭାବ, ଅସୁବିଧା ସମ୍ପର୍କରେ ଅନୁଧ୍ୟାନ କରି ଆବଶ୍ୟକୀୟ ସହାୟତା ପାଇଁ ସରକାରଙ୍କୁ ସୁପାରିଶ କରିବା ମଧ୍ୟ ତାଙ୍କ ଦାୟିତ୍ୱର ପରିସରଭୁକ୍ତ ।

ସମାଜ-ସେବା କରିବାର ଏତେବଡ଼ ସୁଯୋଗକୁ ସେ କାହିଁକି ବା ହାତଛଡ଼ା କରିବେ । ତା'ଛଡ଼ା ପୂର୍ବାପେକ୍ଷା ଏଥିରେ ଅଧିକ ସୁଖ-ସୁବିଧା ମଧ୍ୟ ରହିଛି । ସ୍କୁଲ ଶିକ୍ଷକ ଓ ସାଧାରଣ ଗ୍ରାମବାସୀଙ୍କ ଠାରୁ ଢେର ସମ୍ମାନ ମିଳେ । ସରକାର ପକ୍ଷରୁ ଚାକରବାକର ଯୋଗାଇ ଦିଆଯାଇଥିବାରୁ ଅନ୍ତତଃ ନିତିନିତି ରୋଷେଇ କରିବା ଝମେଲ୍ ନାହିଁ । ହଁ, ଗାଁ ଗଣ୍ଡାରେ ଖୁବ୍ ବୁଲିବାକୁ ପଡ଼ିବ । ଆଜିକାଲି ଭଳି ସେତେବେଳେ କାନପୁର ଠାରୁ ହମୀରପୁର ଯାଏ ରେଳରାସ୍ତା ନ ଥିଲା । ବହୁ ସ୍ଥାନକୁ ଗାଡ଼ି, ମୋଟରର ସୁବିଧା ମଧ୍ୟ ନ ଥାଏ । କେତେକ ସ୍ଥାନକୁ ଶଗଡ଼ରେ ଯିବାକୁ

ପଡ଼େ ତ ଆଉ କେତେ ଅଞ୍ଚଳକୁ ଯିବାକୁ ହେଲେ ଘୋଡ଼ାର ସାହାଯ୍ୟ ନେବାକୁ ହୋଇଥାଏ । ତା'ଛଡ଼ା ଏମିତ ଅନେକ ଜାଗା ଅଛି, ଯେଉଁଠିକି କେବଳ ପାଦରେ ଚାଲି ଚାଲି ଯିବା ବିନା ଆଉ ଅନ୍ୟ ଗତି ନ ଥାଏ ।

ଏଣିକି ପ୍ରେମଚନ୍ଦ ନିଜ ସାବତ ମା' ଓ ପତ୍ନୀ ଶିବରାଣୀଙ୍କୁ ଗାଁରୁ ଆଣି ନିଜ ପାଖରେ ରଖିଲେ । ଶାଶୁ-ବୋହୂଙ୍କ ମଧ୍ୟରେ ସାମୟିକ ମନୋମାଳିନ୍ୟ ଲାଗି ରହିଥିଲେ ହେଁ ଶିବରାଣୀ ଦେବୀ ଘର ଚଳାଇବାର ଦାୟିତ୍ୱ ନିଜ ହାତକୁ ନେଇ ସବୁ ସମ୍ଭାଳି ନେଉଥାନ୍ତି । ବାରମ୍ବାର ଯିବା-ଆସିବା କରିବାରେ ସ୍ୱାମୀଙ୍କର ଅସୁବିଧା ଲକ୍ଷ୍ୟ କରି ଗୋଟିଏ ବଳଦ ଗାଡ଼ି କିଣିବା ପାଇଁ ସେ ତାଙ୍କୁ ପରାମର୍ଶ ଦେଲେ । ଏହା ଶୁଣି ପ୍ରେମଚନ୍ଦ ହସିଲେ । ବଳଦ ଓ ଗାଡ଼ି ଉଭୟ କିଣିବା ପାଇଁ ଶତାଧିକ ଟଙ୍କା ଦରକାର । ଯୋଗୀ ଘରେ ଭିକ୍ଷି । ଏତେଗୁଡ଼ାଏ ଟଙ୍କା ତାଙ୍କ ପାଖରେ ଆସିବ କୁଆଡ଼ୁ ! ହଠାତ୍ ଶିବରାଣୀ ଦେବୀ ନିଜ ମାଟି ଘଡ଼ରେ ସଞ୍ଚିତ ଦେଡ଼ଶହ ଟଙ୍କା ବାହାର କରି ପ୍ରେମଚନ୍ଦଙ୍କୁ ବିସ୍ମିତ କରିଦେଲେ । ସେହି ପଇସାରେ ବଳଦ ଗାଡ଼ି କଣା ହୋଇ ଆସିଲା ଏବଂ ପ୍ରେମଚନ୍ଦଙ୍କର ଯାତାୟାତ ପାଇଁ ଅସୁବିଧା ଆଉ ରହିଲା ନାହିଁ ।

ନିରୀକ୍ଷଣ କାର୍ଯ୍ୟରେ ବୁଲାବୁଲି ଫଳରେ ପ୍ରେମଚନ୍ଦଙ୍କର ସବୁଠାରୁ ବଡ଼ ଲାଭ ହେଲା ଯେ, ସେ ବହୁବିଧ ବିଷୟ ଏବଂ ବିଭିନ୍ନ ପ୍ରକାର ମଣିଷଙ୍କ ସଂସ୍ପର୍ଶରେ ଆସିଲେ । ଅନୁଭବର ପରିସର ପ୍ରସାରିତ ହେଲା । ସରକାରୀ କାର୍ଯ୍ୟର ଚାପ ସତ୍ତ୍ୱେ ସେ ନିଜର ଲେଖାପଢ଼ା ପାଇଁ ବେଶ୍ କିଛି ସମୟ ବାହାର କରି ନେଉଥିଲେ । ଗଳ୍ପ ଓ ଉପନ୍ୟାସ ଲେଖା ଚାଲିଥାଏ । ଆଗରୁ ଧନପତ୍ ରାୟ ଓ ନବାବ୍

ରାୟ ନାମରେ ଲେଖୁଥିଲେ । ଏବେ ପ୍ରେମଚନ୍ଦ ନାଁରେ ଲେଖିବା ଆରମ୍ଭ କଲେ । ୧୯୧୦ ମସିହାରେ ପ୍ରେମଚନ୍ଦ ନାମରେ ତାଙ୍କର ପ୍ରଥମ ହିନ୍ଦୀ ଗଳ୍ପ 'ବଡ଼େ ଘର କୀ ବେଟୀ' ପ୍ରକାଶ ପାଇଲା । ଆଗରୁ ୧୯୦୭ରେ ପ୍ରଥମ ହିନ୍ଦୀ ଉପନ୍ୟାସ 'ପ୍ରେମା' ପ୍ରକାଶିତ ହୋଇଥିଲା ।

ଯୁବକ ସୁଲଭ ମନ ଓ ସ୍ଫୁର୍ତ୍ତି ଯୋଗୁଁ ପ୍ରେମଚନ୍ଦ ପ୍ରତ୍ୟେକ କାର୍ଯ୍ୟରେ କୁଶଳତା ପ୍ରତିପାଦନ କଲେ । ନିରୀକ୍ଷଣ କାର୍ଯ୍ୟରେ ଶାରୀରିକ ପରିଶ୍ରମ ସାଙ୍ଗକୁ ପଢ଼ାଲେଖାରେ ମାନସିକ ଶ୍ରମ ପଡ଼ିଲା । ଗ୍ରାମାଞ୍ଚଳରେ ଖାଦ୍ୟପେୟ ଉପରେ ନିୟନ୍ତ୍ରଣ ରହିଲା ନାହିଁ କମ୍ବା ବେଳକାଳର ଠିକ୍ ଠିକଣା ରହିଲା ନାହିଁ । ଫଳରେ ପ୍ରେମଚନ୍ଦ ଅସୁସ୍ଥତାର ଶିକାର ହେଲେ । ପେଟବ୍ୟଥା ରୋଗରେ ଭରି କଷ୍ଟ ପାଇଲେ । ବହୁ ଉପଚାର କଲେ ସୁଦ୍ଧା କୌଣସିଟା ବିଶେଷ ଫଳପ୍ରଦ ହେଲାନାହିଁ ।

ନିରନ୍ତର ଅସୁସ୍ଥ ରହିବାରୁ କ୍ରମଶଃ ପ୍ରେମଚନ୍ଦଙ୍କ ଶରୀର ଦୁର୍ବଳ ହୋଇଗଲା । ଠୋ ଠୋ କରି ପ୍ରାଣଖୋଲା ହସ ହସିବାରେ ତାଙ୍କର ଭରି ନାଁ ଥିଲା । ଯନ୍ତ୍ରଣା ହେତୁ ତାଙ୍କର ସେଇ ଚିରହସିତ ମୁହଁ ଏଣିକି ସବୁବେଳେ ଶୁଖିଲା ଶୁଖିଲା ଦେଖାଗଲା । କଥା କଥାକେ ତାଙ୍କୁ ଖାଲି ଚିଡ଼ ମାଡ଼ୁଥାଏ ।

ଶାରୀରିକ ଅସୁସ୍ଥତା ହେତୁ ପ୍ରେମଚନ୍ଦ ହମୀରପୁର ଛାଡ଼ି ପୁଣି କାନପୁର ଫେରିଯିବା ପାଇଁ ଦରଖାସ୍ତ କଲେ । କିନ୍ତୁ କାନପୁରକୁ ନ ଦେଇ ଉପରିସ୍ଥ ହାକିମ ତାଙ୍କୁ ବସ୍ତୀ ଜିଲ୍ଲାର ଉତ୍ତରାଞ୍ଚଳକୁ ସବ୍-ଡେପୁଟି ଇନ୍‌ସପେକ୍ଟର ଭାବରେ ପଠାଇଲେ । ସେଠିକାର ଜଳବାୟୁ ମଧ୍ୟ ପ୍ରେମଚନ୍ଦଙ୍କ ପାଇଁ ଅନୁକୂଳ ସିଦ୍ଧ ହେଲା ନାହିଁ । ଏଣୁ

ସେ ଅଧା ଦରମା ସହିତ ଛୁଟି ନେଇ ନଜର ଚିକିତ୍ସା କରାଇବା ପାଇଁ ଏଲାହାବାଦ୍ ଗଲେ । ସେଠି କେତେମାସ ରହିବା ପରେ ସୁସ୍ଥ ହେବା ପରେ ପୁଣି ବସ୍ତୀ ଫେରି ଆସିଲେ ।

ଏଣିକି ଚାକିରି ଅପେକ୍ଷା ପ୍ରେମଚନ୍ଦ କେବଳ ଲେଖାପଢ଼ା ହିଁ କରିବାକୁ ଚାହୁଁଥିଲେ । ବସ୍ତୀ ଫେରିବାକୁ ଚାହୁଁ ନ ଥିଲେ ହେଁ ଅନ୍ନ ସଂସ୍ଥାନର ଅନ୍ୟ କୌଣସି ଉପାୟ ନ ଦେଖି ତାଙ୍କୁ ବାଧ୍ୟ ହୋଇ ଫେରିବାକୁ ହେଲା । ଏହି ସମୟ ମଧ୍ୟରେ ପ୍ରେମଚନ୍ଦ ତାଙ୍କର ବହୁ ଉତ୍କୃଷ୍ଟ ଗଳ୍ପ ରଚନା କରିଛନ୍ତି । ରାଣୀ ସାରନ୍ଧା, ହର ବୌଲ୍, ନମକ କା ଦରୋଗା, ପଞ୍ଚ ପରମେଶ୍ୱର ଭଳି ବହୁଚର୍ଚ୍ଚିତ ଗଳ୍ପମାନ ଏ ସମୟର ସୃଷ୍ଟି । ଠିକ୍ ଏତିକବେଳେ 'ପ୍ରେମ ପଚିଶୀ' ନାମକ ଗଳ୍ପ-ସଂକଳନ ପ୍ରକାଶ ପାଇବାରୁ ହିନ୍ଦୀ ଗଳ୍ପ ଜଗତରେ ଆଲୋଡ଼ନ ସୃଷ୍ଟି ହେଲା । ଚାରିଆଡ଼େ ପ୍ରେମଚନ୍ଦଙ୍କର ଗାଳ୍ପିକତାର ଚର୍ଚ୍ଚା । ବସ୍ତୀର ତତ୍କାଳୀନ ତହସିଲଦାର କବି ମନ୍ନନ ଦ୍ୱିବେଦୀଙ୍କ ସହ ପରିଚୟ ହେଲା ପରେ ପ୍ରେମଚନ୍ଦଙ୍କ ପ୍ରଭାବରେ ସେ ମଧ୍ୟ ଗଳ୍ପ ଲେଖିବା ଆରମ୍ଭ କଲେ ।

ବସ୍ତୀରେ ସବ୍-ଡେପୁଟି ଇନ୍‌ସପେକ୍ଟର ଥିବାବେଳେ ହିଁ ପ୍ରେମଚନ୍ଦଙ୍କର ଝୁଙ୍କ ଉଠିଲା ଯେ, ସେ ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଦେବେ । ସେଥିପାଇଁ ବହୁରାତି ଯାଏ ପଢ଼ାପଢ଼ି କରି ପ୍ରସ୍ତୁତ କଲେ ଏବଂ ବସ୍ତୀରେ ହିଁ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ପାଶ କଲେ ।

କ୍ରମଶଃ ହିନ୍ଦୀ ପ୍ରତି ପ୍ରେମଚନ୍ଦଙ୍କର ଆକର୍ଷଣ ବଢ଼ିଲା । ଉର୍ଦ୍ଦୁ ଅପେକ୍ଷା ହିନ୍ଦୀରେ ଲେଖି ଅଧିକରୁ ଅଧିକ ପାଠକଙ୍କ ପାଖରେ ପହଞ୍ଚି ହେବ ଭାବି ଏଣିକି ହିନ୍ଦୀରେ ହିଁ ଲେଖିବା ପାଇଁ ସ୍ଥିର

କଲେ । ଆଗରୁ ଉର୍ଦ୍ଦୁରେ ଲେଖିଥିବା ନିଜର ଗଳ୍ପଗୁଡ଼ିକୁ ହିନ୍ଦୀରେ ଅନୁବାଦ କରି ଅପେକ୍ଷାକୃତ ବୃହତ୍ତର ପାଠକ ସମୁଦାୟ ପାଖରେ ପହଞ୍ଚାଇଲେ ।

ଏହିଭଳି ଭାବରେ ପ୍ରେମଚନ୍ଦ ସବୁବେଳେ କିଛି ନା କିଛି କରିବାକୁ ଭଲ ପାଉଥିଲେ । ନିକମ୍ମା ହୋଇ ବସି ରହିବା ତାଙ୍କ ଜାତକରେ ନ ଥିଲା । ଏପରିକି, ସ୍କୁଲ ପରିଦର୍ଶନରେ ଗଲାବେଳେ ସେ ପରିଦର୍ଶନ ଅପେକ୍ଷା ପିଲାଙ୍କୁ ପାଠ ପଢ଼ାଇବାରେ ଅଧିକ ଆଗ୍ରହ ପ୍ରକାଶ କରୁଥିଲେ । ତାଙ୍କର ପାଠପଢ଼ା ଶୈଳୀ ଅତ୍ୟନ୍ତ ଚମତ୍କାର ଥିଲା ଏବଂ ଇଂରେଜୀ ଓ ହିନ୍ଦୀ ପଢ଼ାଇଲା ବେଳେ ସେ ସମସ୍ତଙ୍କୁ ମନ୍ତ୍ର ମୁଗ୍ଧ କରି ଦେଉଥିଲେ ।

କିଛି ଦିନ ପରେ ପ୍ରେମଚନ୍ଦ ବସ୍ତୀରୁ ବଦଳି ହୋଇ ଗୋରଖ-ପୁରରେ ଜଏନ୍ କଲେ । ସେ ପିଲାଦିନେ କିଛି କାଳ ଗୋରଖ-ପୁରରେ ରହିଛନ୍ତି । ଏଣୁ ଗୋରଖପୁରର ପରିବେଶ ତାଙ୍କୁ ଆଉ ବିଶେଷ ନୂଆ ଲାଗିଲା ନାହିଁ । ଦରମା ବି କିଛିଟା ବଢ଼ିଗଲା । ଏଣୁ ଘର-ସଂସାର ଚଳାଇବା ସଙ୍ଗେ ସଙ୍ଗେ ଏଠି ସେ ବିଶେଷ ଭାବରେ ଲେଖା-ପଢ଼ାରେ ସମୟ ବିତାଇଲେ ।

ଗୋରଖପୁରରେ ପହଞ୍ଚିବା ପରେ ପରେ ପ୍ରେମଚନ୍ଦଙ୍କ ବଡ଼ ପୁଅ ଶ୍ରୀପତ୍ ରାୟଙ୍କର ଜନ୍ମ ହେଲା । ପାରିବାରିକ କାମ ଦାମରେ ବି ପ୍ରେମଚନ୍ଦଙ୍କୁ କିଛିଟା ସହଯୋଗ କରିବାକୁ ପଡ଼ୁଥାଏ । ଅବଶ୍ୟ କେତେକ ଛୋଟ ଛୋଟ ଘରକାମ ସେ ସବୁବେଳେ ନିଜ ହାତରେ କରିବାକୁ ପସନ୍ଦ କରନ୍ତି । ତା'ଛଡ଼ା ଭୋରରୁ ଉଠି ନିତ୍ୟକର୍ମ ସାରି ପ୍ରାତଃ ଭ୍ରମଣ କରିବା ତାଙ୍କର ନିତିଦିନିଆ ଅଭ୍ୟାସ ଥିଲା । ସବୁ କାମ ଠିକ୍ ସମୟରେ କରି ସମୟର ସଦ୍‌ବିନିଯୋଗ କରିବା ଉପରେ ସେ ସଦା ସର୍ବଦା ଜୋର୍ ଦେଉଥିଲେ ।

ଗୋରଖପୁରସ୍ଥିତ ନର୍ମାଲ ସ୍କୁଲର ଦ୍ୱିତୀୟ ଶିକ୍ଷକ ଭାବରେ ପ୍ରେମଚନ୍ଦଙ୍କର ବଦଳି ହୋଇଥିଲା । ସ୍କୁଲ ଛାତ୍ରାବାସର ତତ୍ତ୍ୱାବଧାରକ ଦାୟିତ୍ୱ ବହନ କରିବାରୁ ସେଠାରେ ତାଙ୍କୁ ସରକାରୀ କ୍ୱାର୍ଟର ମଧ୍ୟ ମିଳିଥିଲା । ଖୁବ୍ ଭଲ ଘର ପାଇଥିବାରୁ ସ୍ୱାସ୍ଥ୍ୟ ଦୃଷ୍ଟିରୁ ତାହା ତାଙ୍କ ପାଇଁ ଯେତିକି ଅନୁକୂଳ ସିଦ୍ଧ ହେଲା, ଗସ୍ତ ଓ ନିରୀକ୍ଷଣ ପରିବର୍ତ୍ତେ ପାଠ ପଢ଼ିବା ଓ ପଢ଼ାଇବା ମଧ୍ୟ ତାଙ୍କ ପାଇଁ ସେତିକି ସୁଖକର ସାବ୍ୟସ୍ତ ହେଲା । ସେ ଉର୍ଦ୍ଦୁ ଓ ଇଂରେଜୀ ସାହିତ୍ୟର ଶିକ୍ଷକ ଥିଲେ । କିନ୍ତୁ ପାଠ୍ୟ-ବିଷୟ ସହିତ ବହୁବିଧ ଆବଶ୍ୟକୀୟ ଜ୍ଞାନ-ବିଜ୍ଞାନ ସମ୍ପର୍କରେ ଛାତ୍ର-ଛାତ୍ରୀଙ୍କୁ ଅବଗତ କରାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ଏପରିକି, କୋମଳମତି ଛାତ୍ରଙ୍କ ମନରେ ଚରିତ୍ର-ନିର୍ମାଣ, ଦେଶପ୍ରେମ ଓ ସ୍ୱତନ୍ତ୍ରତା ପ୍ରତି ଅନୁକୂଳ ମନୋଭାବ ଜାଗ୍ରତ କରାଇବା ପାଇଁ ସେ ସର୍ବଦା ତତ୍ପର ରହୁଥିଲେ । ସ୍କୁଲରେ ପ୍ରେମଚନ୍ଦ ଏଭଳି ସ୍ନେହ-ସୌହାର୍ଦ୍ଦର ବାତାବରଣ ପ୍ରତିଷ୍ଠା କରିଥିଲେ ଯେ, ଖୁବ୍ କମ୍ ସମୟ ମଧ୍ୟରେ ସେ ସମସ୍ତଙ୍କର ପ୍ରିୟ ହୋଇ ପାରିଥିଲେ ।

ଏତିକିବେଳେ ପ୍ରସିଦ୍ଧ ହିନ୍ଦୀ ସାହିତ୍ୟିକ ମହାବୀର ପ୍ରସାଦ ପୋଦ୍ଦାରଙ୍କ ସହିତ ପ୍ରେମଚନ୍ଦଙ୍କର ପରିଚୟ ହେଲା । ପୋଦ୍ଦାରଙ୍କ ପ୍ରଭାବରେ ହିନ୍ଦୀ ପ୍ରତି ତାଙ୍କର ଆକର୍ଷଣ ଆହୁରି ତୀବ୍ରତର ହେଲା । ସେ ଉତ୍ସାହିତ ହୋଇ ଶେଖଶାଦି, ଟଲଷ୍ଟୟ ପ୍ରଭୃତିଙ୍କ ବହୁ ଗଳ୍ପର ହିନ୍ଦୀ ଅନୁବାଦ କଲେ । ପାଠକଙ୍କ ଅନୁରୋଧରେ ତାଙ୍କୁ 'ସୌତ' ଭଳି ନିଜର ବହୁ ଉର୍ଦ୍ଦୁ ଗଳ୍ପର ହିନ୍ଦୀ ଅନୁବାଦ ମଧ୍ୟ କରିବାକୁ ପଡ଼ିଥିଲା । ତା'ଛଡ଼ା 'ସପ୍ତସରୋଜ', 'ନବନିଧି', 'ପ୍ରେମ ପୂର୍ଣ୍ଣିମା' ଭଳି ପ୍ରେମଚନ୍ଦଙ୍କର ଉତ୍କୃଷ୍ଟ ମୌଳିକ ଗଳ୍ପ-ସଂକଳନ ମଧ୍ୟ ଏ

ସମସ୍ୟାର ସୃଷ୍ଟି । ବିଧବା-ବିବାହ ଉପରେ ଆଧାରିତ ନିଜର ଉର୍ଦ୍ଦୁ ଉପନ୍ୟାସ 'ହମ ଖୁର୍ମା ଓ୍ୱ ହମ ସବାବ'ର ହିନ୍ଦୀ ରୂପାନ୍ତର କରି ୧୯୦୭ ମସିହାରେ ସେ ନିଜ ହିନ୍ଦୀ ଉପନ୍ୟାସ-ରଚନାର ଶୁଭାରମ୍ଭ କଲେ ।

ପ୍ରାୟ ଦଶ ବର୍ଷ ପରେ ହିନ୍ଦୀ ସାହିତ୍ୟ-ଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରି ପ୍ରେମଚନ୍ଦ ତାଙ୍କର ଦ୍ୱିତୀୟ ହିନ୍ଦୀ ଉପନ୍ୟାସ 'ସେବା-ସଦନ' ରଚନା କଲେ । ଅବଶ୍ୟ ଏଥିପୂର୍ବରୁ ଉର୍ଦ୍ଦୁ ଭାଷାରେ ତାଙ୍କର ତିନିଗୋଟି ଉପନ୍ୟାସ ପ୍ରକାଶ ପାଇ ସାରିଥାଏ । ଏପରିକି, 'ସେବା-ସଦନ'ର କିଛି ଅଂଶ ମଧ୍ୟ 'ବାଜାରେ ହୁସ୍ନ' ନାମରେ ଲେଖା ସରିଥାଏ । କିନ୍ତୁ ହିନ୍ଦୀରେ 'ସେବା-ସଦନ' ପ୍ରକାଶିତ ହେବା ପରେ ତାହା ଏତେଦୂର ଲୋକପ୍ରିୟ ହେଲା ଯେ, ବହୁ ଭାରତୀୟ ଭାଷାରେ ତା'ର ଅନୁବାଦମାନ ପ୍ରକାଶ ପାଇଲା । ପୁଣି ପରବର୍ତ୍ତୀ କାଳରେ କେତେଗୋଟି ଭାଷାରେ ତା'ର ନାଟ୍ୟ-ରୂପ ଏବଂ କ୍ରମଶଃ ଚଳଚ୍ଚିତ୍ର ରୂପ ମଧ୍ୟ ପ୍ରକାଶ ପାଇଲା । ବିଭିନ୍ନ ପତ୍ର-ପତ୍ରିକାମାନଙ୍କରେ 'ସେବା-ସଦନ'ର ସମୀକ୍ଷା ପ୍ରକାଶ ପାଇଲା ଏବଂ ପ୍ରାୟ ସବୁଥିରେ ଶ୍ରେଷ୍ଠ ଉପନ୍ୟାସ ଭାବରେ ଏହାର ଉଚ୍ଚ ପ୍ରଶଂସା କରାଯାଇଥିଲା ।

## ସ୍ୱାଧୀନଚେତା ପ୍ରେମଚନ୍ଦ

ଠିକ୍ ଏତିକିବେଳେ ଦେଶସାରା ସ୍ୱାଧୀନତା ଆନ୍ଦୋଳନର ଚାଞ୍ଚଲ୍ୟ ଖେଳିଯାଇଥିଲା । ବାଳଗଙ୍ଗାଧର ତିଳକ ସ୍ୱରାଜ୍ୟକୁ ନିଜର ଜନ୍ମସିଦ୍ଧ ଅଧିକାର ବୋଲି ଭାବୁଥିଲା ବେଳେ ମହାତ୍ମା ଗାନ୍ଧୀ ପାରସ୍ପରିକ ବୁଝାମଣା ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ ।

ଇଂରେଜ ସରକାର ଗରମ ଦଳକୁ ମୁଣ୍ଡ ଉଠାଇବାକୁ ଦେଉ ନ ଥିଲେ । ସେ ଜାଣିଥିଲେ ଯେ, ଏହା ହେଉଛି ତାଙ୍କ ପାଇଁ ସର୍ବୋତ୍ତମ ପନ୍ଥା । କିନ୍ତୁ ପ୍ରେମଚନ୍ଦ ସରକାରୀ ଚାକିରିରେ ଥାଇ ସୁଦ୍ଧା ନିଜ ରଚନାମାନଙ୍କରେ ସରକାରୀ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ।

ଗୋରଖପୁରରେ ଥିଲାବେଳେ ପ୍ରେମଚନ୍ଦଙ୍କ ସହ ଗୋଟିଏ ଅପ୍ରୀତିକର ଘଟଣା ଘଟିଲା । ଜିଲ୍ଲାର ସର୍ବୋଚ୍ଚ ଅଧିକାରୀ ହେଉଛନ୍ତି ଜିଲ୍ଲା କଲେକ୍ଟର । ଦିନେ ପ୍ରେମଚନ୍ଦଙ୍କ ଗାଈ ତାଙ୍କ ହତା ଭିତରେ ପଶିଯିବାରୁ ସେ ଖୁବ୍ ରାଗିଗଲେ । ସେ ତ ଆଉ ସାଧାରଣ ହାକିମ ନୁହନ୍ତି ! ଖୋଦ୍ ଗୋରା ସାହେବ ! ପ୍ରେମଚନ୍ଦଙ୍କୁ ଡକାଇ ଧମକି ଦେଇ କହିଲେ—'ଗାଈକୁ ଗୁଳିକରି ମାରିଦେବି ।' ଗାଈ ବିଚାରୀ ଭୟ ପାଇ ସତେ ଯେମିତି ପ୍ରେମଚନ୍ଦଙ୍କ ପାଖରେ ଶରଣ ପଶିଲା । ମାତ୍ର କିଛିଦିନ ତଳେ କଲେକ୍ଟର ସାହେବ ଗୋଟିଏ ଷଣ୍ଢକୁ ଗୁଳିକରି ମାରିଦେଇଥିଲେ । କିନ୍ତୁ ପ୍ରେମଚନ୍ଦ ଖୁବ୍ ସାହସର ସହିତ କଲେକ୍ଟରଙ୍କୁ ଜବାବ ଦେଲେ—'ଇଏ ସରକାରୀ ଷଣ୍ଢ ନୁହେଁ ସାହେବ, ପ୍ରେମଚନ୍ଦଙ୍କ ଗାଈ ।' ବିଚାରୀ ଗାଈଟି ବଞ୍ଚିଗଲା ।

ଆଉ ଦିନକର ଘଟଣା । ନର୍ମାଲ ସ୍କୁଲର ନିଜ ବାରଣ୍ଡାରେ ବସି ପ୍ରେମଚନ୍ଦ ଲେଖୁଥାନ୍ତି । ସାମନା ରାସ୍ତାଦେଇ କଲେକ୍ଟର ସାହେବ ପ୍ରତିଦିନ ବୁଲିବାକୁ ଯାଆନ୍ତି । ଦିନେ ସେ ରାସ୍ତା ଉପରେ ଠିଆ ହୋଇ ପ୍ରେମଚନ୍ଦଙ୍କୁ ଡାକିଲେ । ପାଖକୁ ଆସିବାରୁ ପଚାରିଲେ—'ମୁଁ ପ୍ରତିଦିନ ଏଇ ବାଟ ଦେଇ ଯାଉଛି, ତୁମେ ମୋତେ ପ୍ରଣାମ କରୁନାହଁ କାହିଁକି ?'

ପ୍ରେମଚନ୍ଦ ଉତ୍ତର ଦେଲେ—'ରାସ୍ତାରେ ଯାତାୟତ କରୁଥିବା ପ୍ରତି ବାଟୋଇଙ୍କୁ ପ୍ରତ୍ୟହ ମୁଣ୍ଡିଆ ମାରିବା ମୋର କାମ ନୁହେଁ ।'

—ମୁଁ ଏ ଜିଲ୍ଲାର କଲେକ୍ଟର ବୋଲି କ'ଣ ତୁମେ ଜାଣିନାହଁ ?

ପ୍ରେମଚନ୍ଦ କହିଲେ—'ସେଥିରେ ମୋର କ'ଣ ଅଛି ? ଚାକିରି ସମୟରେ ମୁଁ ଚାକର । କିନ୍ତୁ ନିଜ ଘର ଭିତରେ ମୁଁ ମଧ୍ୟ କୌଣସି ବାଦଶାହଙ୍କଠାରୁ କମ୍ ନୁହେଁ ।'

ଏଥିରେ ରାଗିଯାଇ ଗୋରା ସାହେବ ତାଙ୍କ ଉଦ୍ଦେଶ୍ୟରେ କେତୋଟି ଅପଶବ୍ଦ କହିଲେ । ପ୍ରେମଚନ୍ଦଙ୍କୁ ଏହା ଅସହ୍ୟ ବୋଧ ହେଲା । ସେ ସାଙ୍ଗେ ସାଙ୍ଗେ ଦେଓ୍ୱାନୀ ଅଦାଲତରେ ସେହି ଗୋରା ସାହେବଙ୍କ ବିରୁଦ୍ଧରେ ନାଲିଶ କଲେ । ଅବଶ୍ୟ ପରେ ସ୍ଥାନୀୟ ଲୋକେ ଆସି ତାଙ୍କୁ ବୁଝାସୁଝା କରିବା ପରେ ଯାଇ ଉଭୟଙ୍କ ମଧ୍ୟରେ ରାଜିନାମା ହେଲା । ଏହିଭଳି ନିର୍ଭୀକତା ସାଙ୍ଗକୁ ସ୍ୱାଭିମାନ ବୋଧ ଭଳି ଦୁଇଟି ଗୁଣ ପ୍ରେମଚନ୍ଦଙ୍କ ବ୍ୟକ୍ତିତ୍ୱକୁ ମହାନ୍ କରି ଗଢ଼ିଥିଲା । କ୍ରମଶଃ ଇଂରେଜ ସରକାରଙ୍କ ପ୍ରତି ତାଙ୍କ ମନରେ ଘୃଣାଭାବ ଏତେଦୂର ବଢ଼ିଯାଇଥିଲା ଯେ, ସେ ଏହି ସରକାରଙ୍କ ଅଧୀନରେ କୌଣସି ଚାକିରି ସୁଦ୍ଧା କରିବାକୁ ଚାହୁଁ ନ ଥିଲେ । ଏଣୁ ସରକାରୀ ଚାକିରି ଛାଡ଼ି କୌଣସି ବେସରକାରୀ ଚାକିରି କରିବା ପାଇଁ ସେ ଗମ୍ଭୀର ଭାବରେ ଚିନ୍ତା କରୁଥାନ୍ତି ।

କାନପୁରର ଡି.ଏ.ଭି. ସ୍କୁଲରେ ପ୍ରଧାନ ଶିକ୍ଷକ ପଦ ଖାଲିଥିବା କଥା ସେ ଥରେ ଖବରକାଗଜରେ ପଢ଼ିଥିଲେ । କାନପୁରର ପରମ ମିତ୍ର ଦୟାନାରାୟଣ ନିଗମଙ୍କୁ ପତ୍ର ଲେଖିଲେ ।

ଉତ୍ତର ମିଳିଲା ଯେ, ଡ.ଏ.ଭି. ସ୍କୁଲରେ ଆଉ କୌଣସି ପୋଷ୍ଟ ଖାଲି ନାହିଁ । କେବଳ ମାରୁଓ୍ୱାଡ଼ି ସ୍କୁଲରେ ସହକାରୀ ଶିକ୍ଷକ ପୋଷ୍ଟଟିଏ ଖାଲି ଅଛି । ତଥାପି ପ୍ରେମଚନ୍ଦ ହତାଶ ହେଲେନାହିଁ । ନିଜକୁ ପ୍ରଧାନ ଶିକ୍ଷକ ପଦ ପାଇଁ ଯୋଗ୍ୟ କରିବା ଉଦ୍ଦେଶ୍ୟରେ ନିରନ୍ତର ଉଦ୍ୟମ କରୁଥାନ୍ତି । ଏହି ସମୟରେ ସେ ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ବି.ଏ. ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏତିକିବେଳେ ଫିରାକ ଗୋରଖପୁରୀଙ୍କ ଭଳି ବିଶିଷ୍ଟ ଉର୍ଦ୍ଦୁ କବି ତଥା ଲାହୋରର ବିଶିଷ୍ଟ ଉର୍ଦ୍ଦୁ ପ୍ରକାଶକ ଇମ୍ତିୟାଜ ଅଲ୍ଲୀଙ୍କ ସହ ପ୍ରେମଚନ୍ଦଙ୍କର ସମ୍ପର୍କ ହୋଇଥିଲା । ପ୍ରେମଚନ୍ଦଙ୍କ ବ୍ୟକ୍ତିତ୍ୱ ଉଭୟଙ୍କୁ ପ୍ରଭାବିତ କରିଥିଲା । ଶ୍ରୀଯୁକ୍ତ ଅଲ୍ଲୀ ତାଙ୍କର ଦୁଇ, ତିନୋଟି ଉର୍ଦ୍ଦୁ ଉପନ୍ୟାସ ପ୍ରକାଶନର ଦାୟିତ୍ୱ ମଧ୍ୟ ନେଇଥିଲେ । ଏତଦ୍‌ବ୍ୟତୀତ ପ୍ରେମଚନ୍ଦ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ଭଳି ପ୍ରତିଭାଧର ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି-ଥିଲେ । ସ୍ୱାଧୀନତା ଓ ସାମାଜିକ ବିପ୍ଳବ ପାଇଁ ସମର୍ପିତ ବିପ୍ଳବୀ ବିଦ୍ୟାର୍ଥୀଙ୍କ ବ୍ୟକ୍ତିତ୍ୱ ତାଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

## ସ୍ୱାଧୀନତାପ୍ରେମୀ ପ୍ରେମଚନ୍ଦ

ଏତିକିବେଳେ ପ୍ରଥମ ବିଶ୍ୱଯୁଦ୍ଧ ସରି ଆସୁଥାଏ । ୧୯୧୭ ମସିହାରେ ସଂଘଟିତ ରୁଷିଆ ସମାଜବାଦୀ ଆନ୍ଦୋଳନ ସମଗ୍ର ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଥାଏ । ଏହି ଆନ୍ଦୋଳନର ଐତିହାସିକ ମହତ୍ତ୍ୱ ଉପଲବ୍ଧି କରି ପ୍ରେମଚନ୍ଦ ଏହାକୁ ପୂର୍ଣ୍ଣ-ପ୍ରାଣରେ ସମର୍ଥନ କରୁଥାନ୍ତି । 'ପ୍ରେମାଶ୍ରମ' ଉପନ୍ୟାସର ମୂଳ ଉର୍ଦ୍ଦୁ ରୂପ 'ଗୋଶଏ ଆଫିୟତ'ରେ ସେ ଏହି ଆନ୍ଦୋଳନକୁ

ସ୍ୱୀକୃତି ପ୍ରଦାନ କରିଛନ୍ତି । କହିବା ବାହୁଲ୍ୟ ଯେ, ରୁଷିଆର ଏହି ସମାଜବାଦୀ ଆନ୍ଦୋଳନ କେବଳ ଆମ ରାଷ୍ଟ୍ରୀୟ ଆନ୍ଦୋଳନକୁ ପ୍ରଭାବିତ କରିନାହିଁ; ବରଂ ଭାରତୀୟ ବନ୍ଦୀ ପ୍ରାଣରେ ଅସୀମ ଉଦ୍ଦୀପନା ଓ ଅଦ୍‌ଭୁତ ସାହସ ସଞ୍ଚାର କରିଛି । ଏଣେ 'ରୋଲଟ ଏକ୍ଟ' ଓ 'ଜାଲିୟାନାୱାଲାବାଗ ହତ୍ୟାକାଣ୍ଡ' ଫଳରେ ଦେଶ-ବାସୀଙ୍କ ମନରେ ସରକାର ବିରୋଧୀ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଉଥାଏ ।

ଠିକ୍ ଏତିକିବେଳେ ଆମ ଦେଶରେ ମହାତ୍ମାଗାନ୍ଧୀଙ୍କ ବଳିଷ୍ଠ ନେତୃତ୍ୱରେ ସ୍ୱରାଜ୍ୟ ଆନ୍ଦୋଳନ ଅଧିକ ତୀବ୍ରତର ହେବାରେ ଲାଗିଥାଏ । ଦେଶର ବିଭିନ୍ନ ଅଞ୍ଚଳକୁ ଯାଇ ଜନସାଧାରଣଙ୍କ ମନରେ ଦେଶପ୍ରେମର ଭାବନା ପ୍ରଜ୍ୱଳିତ କରିବା ଗାନ୍ଧୀଜୀଙ୍କର ଉଦ୍ଦେଶ୍ୟ ଥିଲା । ଏହା ସାଙ୍ଗକୁ ବିଦେଶୀ ବସ୍ତୁ ବର୍ଜନ କରିବା ଓ ସ୍ୱଦେଶୀ ବସ୍ତୁର ଅଧିକାଧିକ ଉପଯୋଗ କରିବା ପାଇଁ ସେ ସର୍ବ-ସାଧାରଣଙ୍କୁ ଆହ୍ୱାନ କରୁଥାନ୍ତି । ବିଦେଶୀ ସରକାର ସହ କୌଣସି ପ୍ରକାର ସହଯୋଗ ନ କରିବାକୁ ସେ ଦେଶବାସୀଙ୍କୁ ଏପରି ମତାଇଦେଲେ ଯେ, ଗୃହଂ ଗୃହଂ ଦେଶସାରା ଅସହଯୋଗ ଆନ୍ଦୋଳନର ବହ୍ନି ଜଳି ଉଠିଲା ।

୧୯୨୧ ମସିହା ଫେବୃୟାରୀ ୮ ତାରିଖ । ଗୋରଖପୁରର ଗାଜିମିଆଁ ପଡ଼ିଆରେ ବିଶାଳ ଜନସମାବେଶ । ଜାତିର ଜନକ ମହାତ୍ମା ଗାନ୍ଧୀ ଉଦ୍‌ବୋଧନ ଦେବେ । ସରକାରଙ୍କ ସହ ଅସହ-ଯୋଗ କରିବା ପାଇଁ ପ୍ରବର୍ତ୍ତାଇବେ ସେ । ସରକାରୀ ଚାକିରିଆ ହୋଇ ସୁଦ୍ଧା ପ୍ରେମଚନ୍ଦ ସେ ସଭାରେ ଯୋଗ ନ ଦେଇ ରହି-ପାରିଲେ ନାହିଁ । ଗାନ୍ଧୀଜୀଙ୍କ ଆହ୍ୱାନରେ ବହୁସଂଖ୍ୟକ ସରକାରୀ

କର୍ମଚାରୀ, ଏପରିକି କେତେକ ପୋଲିସ୍ ଅଫିସର ମଧ୍ୟ ଉଦ୍‌ବୁଦ୍ଧ ହୋଇ ନିଜ ନିଜ ପଦ-ପଦବୀ ତ୍ୟାଗ କଲେ । ପ୍ରେମଚନ୍ଦ ତ ପୂର୍ବରୁ ଏହା ଚାହୁଁଥିଲେ । କଥାରେ ଅଛି—'ମନକୁ ଲେଉଟୁଥିଲା କାକର ପାଣି, ବରିଦ ବୋଇଲା ଦିଅ ଟୋକାଣି ।' ଯାହା ୨୧ ବର୍ଷର ଚାକରୀକୁ ନିମିଷକରେ ପଦାଘାତ କରିବା ପାଇଁ ତାଙ୍କ ମନରେ କୌଣସି ଦ୍ୱିଧା ନ ଥିଲା । ପତ୍ନୀ ଶିବରାଣୀ ଦେବୀ ମଧ୍ୟ ଏଥିପାଇଁ ତାଙ୍କୁ ବାଧା ନ ଦେଇ ବରଂ ଉତ୍ସାହିତ କରିଥିଲେ । ଫଳରେ ୧୯୨୧ ମସିହା ଫେବୃୟାରୀ ୧୬ ତାରିଖରେ ସେ ତାଙ୍କର ଚାକରୀରୁ ଇସ୍ତଫା ଦେଲେ ଏବଂ ପରଦିନ ପ୍ରତ୍ୟୁଷରୁ ନର୍ମାଲ ସ୍କୁଲର କ୍ୱାର୍ଟର ମଧ୍ୟ ଖାଲି କରିଦେଲେ ।

## ସାହିତ୍ୟ ସାଧନା

ଏଣିକି ପରିବାରର ଭରଣପୋଷଣ ପାଇଁ କିଛି ନା କିଛି କରିବାକୁ ପଡ଼ିବ । ପ୍ରେମଚନ୍ଦଙ୍କୁ ଦେଶପ୍ରେମର ନିଶା ଘାରିଛି । ଗାନ୍ଧୀଜୀ ତାଙ୍କର ଆଦର୍ଶ । ସ୍ଥିରକଲେ, ସ୍ୱଦେଶୀ ବସ୍ତ୍ରର ପ୍ରଚାରରେ ଯୋଗଦାନ କରିବେ । କେତେଗୁଡ଼ିଏ ଅରଟ ସାହାଯ୍ୟରେ ଖଦଡ଼ ଲୁଗାପଟା ତିଆରି କରିବା ପାଇଁ ଯୋଜନା କଲେ । କିନ୍ତୁ ଦିନ କେଇଟାରେ ସେ ଜାଣିପାରିଲେ ଯେ, ଏହା ତାଙ୍କ ଦେଇ ହୋଇ-ପାରିବ ନାହିଁ । ତେଣୁ ତାକୁ ବନ୍ଦକରି ପ୍ରେମଚନ୍ଦ ସେଠିକାର ଗୋଟିଏ ସ୍ଥାନୀୟ ପତ୍ରିକାର ସମ୍ପାଦକ ପଦ ପାଇଁ ଚେଷ୍ଟା କଲେ । ଚେଷ୍ଟା ଅସଫଳ ହେବାରୁ ସେ ଗୋରଖପୁର ଛାଡ଼ି ବନାରସ ଆସିଲେ ଏବଂ ଏଠାରୁ ପ୍ରକାଶିତ 'ମର୍ଯ୍ୟାଦା' ପତ୍ରିକାର ସମ୍ପାଦକ ଭାବରେ କାର୍ଯ୍ୟ କଲେ । ତା'ପରେ ତାଙ୍କୁ କାଶୀ ବିଦ୍ୟାପୀଠର ସ୍କୁଲ ବିଭାଗରେ ଶିକ୍ଷକତା କରିବା ସୁଯୋଗ ମିଳିଲା । ପୁଣି ଅଳ୍ପ-

କାଳ ମଧ୍ୟରେ ପ୍ରେମଚନ୍ଦ କାନପୁରସ୍ଥିତ ମାରଓ୍ୱାଡ଼ି ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଲେ । ଖୁବ୍ କମ୍ ସମୟ ଭିତରେ ସେ ଛାତ୍ର-ଛାତ୍ରୀଙ୍କର ଅତିପ୍ରିୟ ପ୍ରଧାନ ଶିକ୍ଷକ ହୋଇପାରିଥିଲେ । କିନ୍ତୁ ସ୍କୁଲର ମେନେଜର ସର୍ବଦା ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରି ବାଧା ସୃଷ୍ଟି କରୁଥିଲେ । ଏଭଳି ଅଶାନ୍ତି ଯୋଗୁ ସେ ବର୍ଷକ ପରେ ଚାକିରି ଛାଡ଼ି ପୁଣି କାନପୁରରୁ ବନାରସ ଫେରିଲେ ।

ପଣ୍ଡିତ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ଦ୍ୱାରା କାନପୁରରେ ପ୍ରତିଷ୍ଠିତ ପ୍ରତାପ ପ୍ରେସ୍ ଓ ତା'ର କ୍ରାନ୍ତିକାରୀ କାର୍ଯ୍ୟାବଳୀ ଦ୍ୱାରା ପ୍ରଭାବିତ ପ୍ରେମଚନ୍ଦ ବନାରସରେ ଅନୁରୂପ ପ୍ରେସ୍ ସ୍ଥାପନ କରିବା ପାଇଁ ଚେଷ୍ଟାକଲେ । ପରିବାର ସହିତ ସହରରୁ ଚାରିମାଇଲ ଦୂର ନିଜ ଗାଁ ଲମହୀରେ ରହି ସେ ଏଥିପାଇଁ ଖୁବ୍ ଦଉଡ଼-ଧାପଡ଼ କଲେ । କିନ୍ତୁ ମୂଳଧନ ଓ ବ୍ୟବସାୟ ବୁଦ୍ଧି ଉଭୟର ଅଭାବରେ ତାଙ୍କର ଏହି ଆଶା କ୍ରମଶଃ ମଉଳିଗଲା । ପୁଣିଥରେ ସେ ଚାକିରି କଥା ଚିନ୍ତାକଲେ । ଏଥରକ ତାଙ୍କୁ ଲକ୍ଷ୍ନୌର 'ମାଧୁରୀ' ପତ୍ରିକାର ସମ୍ପାଦକ ଚାକିରି ମିଳିଲା । ଏକା ଏକା ପ୍ରେମଚନ୍ଦଙ୍କୁ ସମ୍ପାଦନ ସମ୍ବନ୍ଧୀ ସମସ୍ତ କାର୍ଯ୍ୟ କରିବାକୁ ପଡ଼େ । ଜଣେହେଲେ ସହାୟକ କିମ୍ବା ସହକାରୀ ସମ୍ପାଦକ ନ ଥା'ନ୍ତି । ତା ସତ୍ତ୍ୱେ ପତ୍ରିକାର ମାଲିକ ପ୍ରେମଚନ୍ଦଙ୍କ ଦ୍ୱାରା ପାଠ୍ୟ-ପୁସ୍ତକ ତଥା ଏଣୁତେଣୁ ବ୍ୟବସାୟ ସମ୍ବନ୍ଧୀ ଲେଖାଲେଖି କରାଇଲେ । ଫଳରେ ବାଧ୍ୟହୋଇ ପ୍ରେମ-ଚନ୍ଦଙ୍କୁ 'ମାଧୁରୀ' ପତ୍ରିକାର ସମ୍ପାଦକତ୍ୱ ଛାଡ଼ିବାକୁ ହେଲା । ସେ ବନାରସ ଫେରିଆସି ନିଜେ 'ହଂସ' ନାମକ ପତ୍ରିକାଟିଏ ପ୍ରକାଶ କରିବାକୁ ଲାଗିଲେ ।

ବନାରସରେ ପହଞ୍ଚି ପ୍ରେମଚନ୍ଦ କିଛିଦିନ 'ଜ୍ଞାନମଣ୍ଡଳ'ରେ କାମ କଲେ । 'ଆଜ' ଖବରକାଗଜରେ ଟିପ୍ପଣୀମାନ ଲେଖନ୍ତି

ଏବଂ 'ମର୍ଯ୍ୟାଦା' ପତ୍ରିକାର ପ୍ରକାଶନ ବିଷୟରେ ବୁଝାସୁଝା କରନ୍ତି । ଏତକବେଳେ କିଛିଟା ଅର୍ଥ ସଞ୍ଚୟ କରି ସେ ଗାଁ ଘରର ମରାମତି କରାଇଲେ । ରହିବା ସୁବିଧା ହୋଇଯିବାରୁ ଲେଖା-ପଢ଼ାରେ ସେ ଖୁବ୍ ମନଦେଲେ । ଏହି ସମୟରେ 'ହଂସ' ସାଙ୍ଗକୁ 'ଜାଗରଣ' ନାମକ ଆଉ ଗୋଟିଏ ସାପ୍ତାହିକ ପତ୍ରିକା ପ୍ରକାଶ କରିବାକୁ ଲାଗିଲେ । ଏଥିପାଇଁ ତାଙ୍କୁ ବହୁ ପରିଶ୍ରମ କରିବା ସାଙ୍ଗେ ସାଙ୍ଗେ ଭୟଙ୍କର ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା ।

ଘୋର ଅର୍ଥାଭାବ ସତ୍ତ୍ୱେ ପ୍ରେସ୍‌ଟିଏ ସ୍ଥାପନ କରିବାର ଅଦମ୍ୟ ଇଚ୍ଛା ପ୍ରେମଚନ୍ଦଙ୍କ ମନରୁ ଲିଭି ନ ଥିଲା । 'ହଂସ' ଓ 'ଜାଗରଣ'କୁ ବଞ୍ଚାଇ ରଖିବା ପାଇଁ ବି ପ୍ରେସ୍‌ଟିଏ ଦରକାର । ଜ୍ଞାନପୀଠରୁ ଚାକିରି ଛାଡ଼ି ଏବେ ସେ କାଶୀ ବିଦ୍ୟାପୀଠର ସ୍କୁଲ ବିଭାଗରେ ପ୍ରଧାନ ଶିକ୍ଷକ ଭାବରେ ଜଏନ୍ କଲେ । ଗାଁରୁ ପ୍ରତ୍ୟହ ଯାତାୟାତ କରିବାରେ ଅସୁବିଧା ହେବାରୁ କବୀରଚୌରା ଅଞ୍ଚଳରେ 'ଆଶା ଭବନ' ନାମକ ଘରେ ରହିବାକୁ ଲାଗିଲେ ।

ବହୁ ଦଉଡ଼-ଧାପଡ଼ କରିବା ପରେ ପ୍ରେମଚନ୍ଦ ପ୍ରେସ୍‌ଟିଏ ସ୍ଥାପନ କରିବାରେ ସଫଳ ହେଲେ । ମିତ୍ର ଦୟାନାରାୟଣ ନିଗମଙ୍କ ପରାମର୍ଶରେ ତା'ର ନାମ ସରସ୍ୱତୀ ପ୍ରେସ୍ ରଖାଗଲା ! ବନ୍ଧୁମାନଙ୍କ-ଠାରୁ ଧାର କରଜ କରି ଆଉ ଜଣେ ବ୍ୟବସାୟୀ ବନ୍ଧୁଙ୍କୁ ଅଂଶୀଦାର କରି ପ୍ରେମଚନ୍ଦ ପ୍ରେସ୍ ସ୍ଥାପନ କରିଥିଲେ । ବ୍ୟବସାୟ ଦୃଷ୍ଟିରୁ ଦିନକୁ ଦିନ କ୍ଷତିର ପରିମାଣ ବଢ଼ିଚାଲିଲା । ତଥାପି ସେ ପ୍ରେସ୍‌ଟିକୁ ଜୀବନ ଦେଇ ଭଲ ପାଉଥିଲେ । ଦେଶପାଇଁ କିଛି କରିବା ଉଦ୍ଦେଶ୍ୟରେ ପ୍ରେସ୍‌ଟିକୁ ମାଧ୍ୟମ ଭାବରେ ସେ ପ୍ରତିଷ୍ଠା

କରିଥିଲେ । ଏଣୁ ସବୁ କ୍ଷତି ସହି ସେ ପ୍ରେସ୍‌ଟିକୁ ପୁଣିଥରେ ନିଜ ହାତକୁ ନେଇ ଆସିଲେ । କେତେବେଳେ ପ୍ରେସ୍ କର୍ମଚାରୀଙ୍କ ପାଉଣା ପାଇଁ ଦଉଡ଼ା-ଦଉଡ଼ି କରିବାକୁ ପଡ଼ୁଥିଲା ତ କେତେ-ବେଳେ କାଗଜ ପଇସା ଭରଣା କରିବା ପାଇଁ ଧାରକରଜ କରିବାକୁ ପଡୁଥିଲା । ତଥାପି ପ୍ରେମଚନ୍ଦଙ୍କ ମନରେ ଅପୂର୍ବ ଉଲ୍ଲାସ । ପ୍ରୁଫ୍ ଦେଖି ଦେଖି ଆଖି ଦୁର୍ବଳ ହୋଇ ପଡୁଥିଲେ ହେଁ ମନରେ ତାଙ୍କର ଗ୍ଲାନି ନାହିଁ, ଅନୁଶୋଚନା ନାହିଁ । ବରଂ ଏତିକିବେଳେ ତାଙ୍କ ସୃଷ୍ଟିଶୀଳ ଲେଖନୀ ଖୁବ୍ କ୍ଷୀପ୍ର ଗତିରେ ଆଗେଇ ଚାଲିଥିଲା । ବସ୍ତୁତଃ, ସାହିତ୍ୟିକ ଜୀବନର ଅଗ୍ରଗତିରେ ସେ ପ୍ରସନ୍ନ ଅନୁଭବ କରୁଥିଲେ । ସାମାନ୍ୟ ଆର୍ଥିକ ଅସ୍ୱଚ୍ଛଳତା ତାଙ୍କ ଚଲାପଥରେ ବିଶେଷ ବାଧା ସୃଷ୍ଟି କରିପାରୁ ନ ଥିଲା ।

୧୯୨୨ ମସିହାର ଆରମ୍ଭରେ 'ପ୍ରେମାଶ୍ରମ' ପ୍ରକାଶିତ ହୋଇସାରିଥାଏ । ଦୁଇବର୍ଷ ପୂର୍ବରୁ 'ବରଦାନ' ନାମରେ ସଂସ୍କାରଧର୍ମୀ ଉପନ୍ୟାସଟିଏ ବି ଆତ୍ମପ୍ରକାଶ କରି ସାରିଥାଏ । 'ପ୍ରେମାଶ୍ରମ'ରେ ଜମିଦାରୀ ପ୍ରଥା ଏବଂ କୃଷକ ଜୀବନରେ ନବ ଜାଗରଣ ଆଣିବା ପାଇଁ ପ୍ରେମଚନ୍ଦଙ୍କ ଉଦ୍ୟମ ଉଚ୍ଚ ପ୍ରଶଂସିତ ହେଉଥାଏ । ଗାନ୍ଧୀଜୀଙ୍କ ନେତୃତ୍ୱରେ ସ୍ୱରାଜ୍ୟ ଆନ୍ଦୋଳନ ଯେତିକି ତୀବ୍ରତର ହେଉଥାଏ, ପ୍ରେମଚନ୍ଦ ଗାନ୍ଧୀଜୀଙ୍କ ଆଦର୍ଶରେ ତତୋଧିକ ଅନୁପ୍ରାଣିତ ହେବାକୁ ଲାଗିଥାନ୍ତି । ପରିଣାମତଃ, 'ରଙ୍ଗଭୂମି' ଉପନ୍ୟାସର ସୃଷ୍ଟି । ଶିଳ୍ପ ଓ ଶିଳ୍ପପତିଙ୍କୁ ପ୍ରଶ୍ରୟ ନ ଦେଇ କୁଟୀର ଶିଳ୍ପର ପୁନରୁଦ୍ଧାର ତଥା ଗ୍ରାମାଭିମୁଖୀ ହୋଇ ହରିଜନ ଉଦ୍ଧାର, ନିଶା ନିବାରଣ ଆଦି ଉପରେ ଗୁରୁତ୍ୱ ଦେଇଥିବା ଗାନ୍ଧୀଜୀଙ୍କ ଆଦର୍ଶ ପ୍ରତିଫଳିତ ହୋଇଛି ଏହି ଉପନ୍ୟାସରେ । ସର୍ବୋପରି

ହିଂସା ବିରୁଦ୍ଧରେ ଅହିଂସାର ପ୍ରୟୋଗ କରି ନୈତିକ ବିଜୟ ହାସଲ କରିବା ଦର୍ଶାଇ ପ୍ରେମଚନ୍ଦ ଗାନ୍ଧୀବାଦର ସାର୍ଥକତା ପ୍ରତିପାଦିତ କରିଛନ୍ତି । 'ରଙ୍ଗଭୂମି' ଉପନ୍ୟାସ ଗଙ୍ଗା ପୁସ୍ତକମାଳା, ଲକ୍ଷ୍ନୌ ଦ୍ୱାରା ପ୍ରକାଶିତ ହେଲା । ପରେ ପରେ ଏହାର ଉର୍ଦ୍ଦୁ ସଂସ୍କରଣ 'ଚୌଗାନେ ହସ୍ତୀ' ପ୍ରକାଶ ପାଇଲା । ଏହି ସମୟରେ ପ୍ରେମଚନ୍ଦ 'କର୍ବଳା' ଓ 'ସଂଗ୍ରାମ' ନାମକ ଦୁଇଟି ନାଟକ ଏବଂ ବହୁ ସଂଖ୍ୟକ ଗଳ୍ପ ମଧ୍ୟ ଲେଖିଥିଲେ । କିନ୍ତୁ 'ରଙ୍ଗଭୂମି' ଉପନ୍ୟାସରେ ତାଙ୍କୁ ଯେଉଁ ଅଭୂତପୂର୍ବ ସମ୍ମାନ ମିଳିଲା, ସେଥିରେ ସେ ପାଠକଙ୍କ ନିକଟରେ ଉପନ୍ୟାସ-ସମ୍ରାଟ ନାମରେ ପରିଚିତ ହେଲେ ।

ପ୍ରେସ୍ ଯୋଗୁଁ ବେଳକୁ ବେଳ ପ୍ରେମଚନ୍ଦଙ୍କ ଆର୍ଥିକ ଦୁର୍ଗତି ବଢ଼ିଲା ପଛକେ କମିଲା ନାହିଁ । ନିଜ ଲେଖାଲେଖି ତଥା ଅନ୍ୟ ଯେ କୌଣସି ଦିଗରୁ ସେ ଯାହା କିଛି ପଇସା ପାଆନ୍ତି, ସବୁ ପ୍ରେସ୍ କାମରେ ଲଗାଇ ଦିଅନ୍ତି । ତଥାପି ଅଭାବ ମେଣ୍ଟେ ନାହିଁ । ଏତିକ-ବେଳେ ପ୍ରେମଚନ୍ଦ ଖବର ପାଇଲେ ଯେ, ଗଙ୍ଗା ପୁସ୍ତକମାଳାର ମାଲିକ ଦୁଲାରେଲାଲ ଭାର୍ଗବଙ୍କର ଜଣେ ସାହିତ୍ୟିକ ପରାମର୍ଶଦାତା ଦରକାର । ମାସିକ ଶହେ ଟଙ୍କା ଦରମାରେ ନିଯୁକ୍ତି ପାଇ ପ୍ରେମ-ଚନ୍ଦ ସପରିବାର ଲକ୍ଷ୍ନୌରେ ଯାଇ ରହିଲେ । ଗଙ୍ଗା ପୁସ୍ତକମାଳାର କାମ କରିବା ସାଙ୍ଗକୁ ନିଜ ରଚନାତ୍ମକ କାର୍ଯ୍ୟରେ ମଧ୍ୟ ସେ ଗଭୀର ଭାବରେ ମନୋନିବେଶ କଲେ । ଜୀବନର ବହୁବିଧ ଅନୁଭୂତିକୁ ସେ ଗଳ୍ପାକାରରେ ଅଭିବ୍ୟକ୍ତ କଲେ । ଲକ୍ଷ୍ନୌର ଫମ୍ପା ଆଭି-ଜାତ୍ୟ ଉପରେ ଆଧାରିତ ପ୍ରେମଚନ୍ଦଙ୍କର ବହୁଚର୍ଚ୍ଚିତ କାହାଣୀ 'ଶତରଞ୍ଜ କେ ଖିଲାଡ଼ୀ' ଏ ସମୟର ସୃଷ୍ଟି ।

୧୯୨୬ ବେଳକୁ 'କାୟାକଳ୍ପ' ନାମକ ଗୋଟିଏ ଭିନ୍ନ ସ୍ୱାଦର ଉପନ୍ୟାସ ସାଙ୍ଗକୁ ମହାପୁରୁଷମାନଙ୍କର ଜୀବନୀ ସମ୍ବଳିତ ନିବନ୍ଧ-ସଂଗ୍ରହଟିଏ ମଧ୍ୟ ସରସ୍ୱତୀ ପ୍ରେସ୍‌ରୁ ପ୍ରକାଶିତ ହେଲା । ଏହି ସମୟରେ ଏଲାହାବାଦରୁ ମହିଳାମାନଙ୍କ ପାଇଁ ପ୍ରକାଶିତ 'ଚାନ୍ଦ' ମାସିକ ପତ୍ରିକାରେ ମଧ୍ୟ ପ୍ରେମଚନ୍ଦଙ୍କ ଗଳ୍ପ ପ୍ରକାଶିତ ହେଉଥାଏ । ଖୁବ୍ କମ୍ ସମୟ ମଧ୍ୟରେ ଗାଳ୍ପିକ ଭାବରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଲେ । 'ଚାନ୍ଦ'ର ଗଳ୍ପ ବିଶେଷାଙ୍କ ସମ୍ପାଦିତ କରି ପତ୍ରିକାର ଗୁଣାତ୍ମକ ଅଭିବୃଦ୍ଧି କରିଥିବାରୁ 'ଚାନ୍ଦ' କାର୍ଯ୍ୟାଳୟ ତାଙ୍କ ସମ୍ମାନରେ 'ପ୍ରେମ ପ୍ରମୋଦ' ନାମକ ତାଙ୍କର ଗଳ୍ପସଙ୍କଳନ-ଟିଏ ପ୍ରକାଶ କରିଥିଲା । ଏତଦ୍‌ବ୍ୟତୀତ ଯୌତୁକ ପ୍ରଥା ଉପରେ ଆଧାରିତ ବହୁ ଚର୍ଚ୍ଚିତ ଉପନ୍ୟାସ 'ନିର୍ମଳା' ଏବଂ ବିଧବା-ବିବାହ ସମ୍ବନ୍ଧୀୟ ଉପନ୍ୟାସ 'ପ୍ରତିଜ୍ଞା' ମଧ୍ୟ 'ଚାନ୍ଦ' କାର୍ଯ୍ୟାଳୟରୁ ଯଥାକ୍ରମେ ୧୯୨୬ ଓ ୧୯୨୭ ମସିହାରେ ପ୍ରକାଶ ପାଇଥିଲା ।

ଗଙ୍ଗା ପୁସ୍ତକମାଳା ପରେ ପ୍ରେମଚନ୍ଦ ନବଲ କିଶୋର ପ୍ରେସ୍‌ର ମାସିକ ପତ୍ରିକା 'ମାଧୁରୀ'ର ସମ୍ପାଦକ ଭାବରେ ଯୋଗ ଦେଲେ । ମାସିକ ଦରମା ଦୁଇଶହ ଟଙ୍କା । ଏତେଗୁଡ଼ିଏ ଟଙ୍କା ସେ ଆଗରୁ କେବେ ପାଇ ନ ଥିଲେ । ଅର୍ଥାଭାବ କେତେକାଂଶରେ ଦୂର ହେଲା । ତା ପରିବର୍ତ୍ତେ ଖୁବ୍ ମନ ଲଗାଇ 'ମାଧୁରୀ'ର ସମ୍ପାଦନା କଲେ ।

'ମାଧୁରୀ'ର ଗୋଟିଏ ସଂଖ୍ୟାରେ ପ୍ରେମଚନ୍ଦଙ୍କର ବ୍ୟଙ୍ଗ ଗଳ୍ପଟିଏ ପ୍ରକାଶ ପାଇଲା — 'ମୋଟେରାମ ଶାସ୍ତ୍ରୀ ।' ସଂଯୋଗବଶତଃ ଲକ୍ଷ୍ନୌ ସହରରେ ମୋଟେରାମ ଶାସ୍ତ୍ରୀ ନାମକ ଜଣେ ବୈଦ୍ୟ ଥିଲେ । କେତେଜଣ ଈର୍ଷା ପରାୟଣ ତଥାକଥିତ ସାହିତ୍ୟିକ

ଶାସ୍ତ୍ରୀଙ୍କୁ ଉସୁକାଇଲେ ଯେ, ଜାଣିଶୁଣି ତାଙ୍କୁ ଅପମାନିତ କରିବା ପାଇଁ ଏଭଳି ଗଳ୍ପ ଲେଖାଯାଇଛି । ବୈଦ୍ୟରାଜ କଛି ନ ବୁଝି ନ ସୁଝି ପ୍ରେମଚନ୍ଦ ଓ 'ମାଧୁରୀ' ବିରୁଦ୍ଧରେ ମାନହାନି ମକଦ୍ଦମା ଦାୟର କଲେ । ଅଦାଲତରୁ ଓ୍ୱାରେଣ୍ଟ ପାଇ ଯଥାସମୟରେ ପ୍ରେମଚନ୍ଦ କଚେରୀରେ ହାଜର ହେଲେ । ନିଜ ବୟାନରେ ସେ ଅଦାଲତର ବିଶ୍ୱାସଭାଜନ ହୋଇ ପାରିଲେ ଯେ, ନିଜ ଗଳ୍ପର ନାୟକଙ୍କ ସହ ଅଭିଯୋଗକାରୀ ମୋଟେରାମ ଶାସ୍ତ୍ରୀଙ୍କର କୌଣସି ସଂପର୍କ ନାହିଁ । ବାସ୍, କେଶ୍ ରଦ୍ଦ ହୋଇଗଲା । କେଶ୍ ଯୋଗୁଁ ଆଲୋଚ୍ୟ କାହାଣୀ ସମଗ୍ର ସହରରେ ଖୁବ୍ କୌତୁହଳ ସୃଷ୍ଟି କରିଥିଲା । କେଶ୍ ରଦ୍ଦ ହୋଇଯିବା ପରେ ସଂପାଦକୀୟ ଟିପ୍ପଣୀ ସହିତ ପ୍ରେମଚନ୍ଦ ପୁଣିଥରେ 'ମାଧୁରୀ'ରେ 'ମୋଟେରାମ ଶାସ୍ତ୍ରୀ' ଗଳ୍ପ ପ୍ରକାଶ କଲେ । ଏଣିକି ପାଠକ ଆଉଥରେ ଭଲ କରି କାହାଣୀ ପଢ଼ିବା ସୁଯୋଗ ପାଇଲେ ।

ଉତ୍ତର ପ୍ରଦେଶ ଭଳି ଗୋଟିଏ ବିଶାଳ ପ୍ରଦେଶର ରାଜଧାନୀ ହୋଇଥିବାରୁ ଲକ୍ଷ୍ନୌ ସହର ରାଜନୈତିକ ଅସ୍ଥିରତାର କେନ୍ଦ୍ର ଥିଲା । ନିଜ ନିଜର ସ୍ୱାର୍ଥ ସାଧନ ପାଇଁ ବିଭିନ୍ନ ଦଳ ଓ ବ୍ୟକ୍ତି ନିତ୍ୟ ନୂତନ ରାଜନୀତିକ ପେଞ୍ଚ ପାଞ୍ଚ ଆରମ୍ଭ କରି ଦେଇଥାନ୍ତି । ଏପରିକି, ଗରିବ ଜନତାର ଝାଳବୁହା ଧନରେ ସାହେବମାନଙ୍କର ସ୍ୱାଗତ-ସମ୍ବର୍ଦ୍ଧନା, ଆତସ ବାଜି ଆଦି ହୁଏ । ସେ ସମୟରେ ବଡ଼ଲାଟଙ୍କ ଆଗମନରେ ୩୫/୪୦ ହଜାର ଟଙ୍କାର ବାଣମରି ଯାଉଥିଲା । ଏସବୁ ଦେଖି ପ୍ରେମଚନ୍ଦଙ୍କ ମନରେ ଭୀଷଣ ଯନ୍ତ୍ରଣା ହେଉଥାଏ । ପ୍ରତିକ୍ରିୟା ସ୍ୱରୂପ, ସାମ୍ରାଜ୍ୟବାଦୀ ଶାସନ ବିରୁଦ୍ଧରେ ଲେଖନୀ ତାଙ୍କର ଆହୁରି ତୀବ୍ର ହୋଇ ଉଠୁଥିଲା । ତାଙ୍କର ଗୋଟିଏ

ଗଳ୍ପ ସବେ ଯେମିତି ଭୟଙ୍କର ବାଣ ହୋଇ ଅତ୍ୟାଚାର ଓ ଅତ୍ୟାଚାରୀ ଉଭୟଙ୍କ ଉପରେ ପ୍ରହାର କରୁଥିଲା । ପ୍ରେମଚନ୍ଦଙ୍କ ଅନେକ ଗଳ୍ପ ଏତେ ଶକ୍ତିଶାଳୀ ଥିଲା ଯେ, ବିଭିନ୍ନ ଭାଷାରେ ତା'ର ଅନୁବାଦ ହେବାକୁ ଲାଗିଲା । ଏପରିକି, 'ମୁକ୍ତିମାର୍ଗ' ନାମକ ତାଙ୍କର ଗୋଟିଏ ଗଳ୍ପ ଜାପାନୀ ଭାଷାରେ ଅନୂଦିତ ହୋଇ ବିଶ୍ୱବିଖ୍ୟାତ ପତ୍ରିକା 'କାଇଜୋ'ରେ ପ୍ରକାଶ ପାଇଥିଲା ।

ବିଦେଶୀ ଶାସନର କୁଚକ୍ର ସାଙ୍ଗକୁ ସ୍ୱତନ୍ତ୍ରତା ସେନାନୀଙ୍କର ସଙ୍ଗଠନ ମଧ୍ୟ ବଳବତ୍ତର ହେବାକୁ ଲାଗିଥାଏ । ଇଂରେଜ ଅଫିସରମାନେ ଜନସାଧାରଣଙ୍କୁ ଯେତିକି ପାଦରେ ଦଳିଦେବାକୁ ଚାହୁଁଥା'ନ୍ତି, ସାଧାରଣ ଲୋକେ ସେତିକି ଉତ୍କ୍ଷିପ୍ତ ହୋଇ ଉଠୁଥା'ନ୍ତି । 'ସାଇମନ୍ କମିଶନ' ବିରୁଦ୍ଧରେ ଦେଶସାରା ବିଦ୍ରୋହର ନିଆଁ ଜଳି ଉଠିଲା ।

ଏତିକିବେଳେ ପ୍ରେମଚନ୍ଦ ତାଙ୍କର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ଉପନ୍ୟାସ 'ଗବନ' ଲେଖୁଥାନ୍ତି । ମଧ୍ୟବର୍ଗୀୟ ସମାଜର ଅସହାୟତା ଏବଂ ପୋଲିସ ବାହିନୀର କଳଙ୍କିତ କାହାଣୀ ସବୁ ଏହି ଉପନ୍ୟାସରେ ଜୀବନ୍ତ ହୋଇ ଉଠୁଥାଏ । ୧୯୩୧ ମସିହାରେ ସରସ୍ୱତୀ ପ୍ରେସ୍‌ରୁ ଏହା ଆତ୍ମପ୍ରକାଶ କଲା । ପ୍ରାୟ ଏହି ସମୟରେ ହିଁ ରାଷ୍ଟ୍ରୀୟ ଭାବଧାରାରେ ଉଦ୍‌ବୁଦ୍ଧ ପ୍ରେମଚନ୍ଦଙ୍କର ଆଉ ଗୋଟିଏ ଗଳ୍ପ ସଂଗ୍ରହ 'ସମର ଯାତ୍ରା' ମଧ୍ୟ ପ୍ରକାଶ ପାଇଥିଲା ।

ସାହିତ୍ୟ ଜଗତରେ ପ୍ରେମଚନ୍ଦଙ୍କ ଖ୍ୟାତି ଦିନକୁ ଦିନ ବଢ଼ିବାରେ ଲାଗିଥାଏ । ପାଠକ, ସାହିତ୍ୟିକ ଓ ବିଶିଷ୍ଟ ବ୍ୟକ୍ତି-ମାନଙ୍କର ପ୍ରଶଂସାପତ୍ରମାନ ବହୁ ସଂଖ୍ୟାରେ ଆସୁଥାଏ । ପ୍ରସିଦ୍ଧ

ହିନ୍ଦୀ ଲେଖକ ଜୈନେନ୍ଦ୍ରକୁମାର ହିନେ ପ୍ରେମଚନ୍ଦଙ୍କ ସହ ସାକ୍ଷାତ କରିବା ପାଇଁ ଲକ୍ଷ୍ନୌରେ ଆସି ପହଞ୍ଚିଲେ । ଉପନ୍ୟାସ-ସମ୍ରାଟଙ୍କୁ ଏତେ ସରଳ ଓ ନିରାଡ଼ମ୍ବର ଦେଖି ଜୈନେନ୍ଦ୍ରଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ହଂସ, ଜାଗରଣ, ସରସ୍ୱତୀ ପ୍ରେସ୍, ପତ୍ନୀ ଓ ତିନୋଟି ସନ୍ତାନର ଦାୟିତ୍ୱ ସାଙ୍ଗକୁ ସ୍ୱରାଜ୍ୟ ଓ ସମାଜ-ସଂସ୍କାରର ସ୍ୱପ୍ନ ଦେଖୁଥିବା ସିଧାସାଦା ମଣିଷଟିଏ ଏଭଳି ବେପରୁଆ ଭାବରେ ହସି ବୋଲିପାରେ, ଏହା ଦେଖି ଜୈନେନ୍ଦ୍ର ଅଭିଭୂତ ହୋଇ ପଡ଼ିଲେ ।

ହଠାତ୍ ନବଲ କିଶୋର ପ୍ରେସ୍‌ର ମାଲିକଙ୍କ ନିଧନ ଫଳରେ ପ୍ରେମଚନ୍ଦଙ୍କୁ ଚାକିରି ଛାଡ଼ିବାକୁ ହେଲା । ସେ ବନାରସ ଫେରିଯାଇ ଲେଖାପଢ଼ା, ପ୍ରେସ୍ ଓ ପ୍ରକାଶନରେ ପୂରା ସମୟ ଦେବାକୁ ଚାହିଁଲେ । ଗାନ୍ଧୀଜୀଙ୍କ ଦାଣ୍ଡି ଅଭିଯାନ ଶେଷ ହୋଇ ଯାଇଥାଏ । ନମକ ଆନ୍ଦୋଳନ ଖୁବ୍ ଜୋରରେ ଚାଲିଥାଏ । ଲେଖିବା ଓ କଥା କହିବା ଉପରେ ସରକାରଙ୍କ ପକ୍ଷରୁ କଟକଣା ଜାରି କରି-ଯାଇଥାଏ । ଯାଁ-ଯାଁ ଯେଉଁସବୁ ସମ୍ବାଦପତ୍ର ପ୍ରକାଶ ପାଉଥିଲା, ତାହା ବି ଘୋର ଅନିଶ୍ଚିତ ଅବସ୍ଥାରେ ହିଁ ଅନିୟମିତ ପ୍ରକାଶ ପାଉଥିଲା । କିନ୍ତୁ ପ୍ରେମଚନ୍ଦଙ୍କ ସଂପାଦନାରେ 'ହଂସ' ନିୟମିତ ପ୍ରକାଶିତ ହେଉଥାଏ । ସମ୍ପାଦକୀୟ ଟିପ୍ପଣୀ ମାଧ୍ୟମରେ ଜଣେ ଜାଗ୍ରତ ପ୍ରହରୀ ଭଳି ରାଷ୍ଟ୍ରବିରୋଧୀ ସମସ୍ତ କାର୍ଯ୍ୟ-କଳାପର କଟୁ ଆଲୋଚନା କରୁଥାନ୍ତି । ଫଳରେ 'ହଂସ' ଓ ସରସ୍ୱତୀ ପ୍ରେସ୍ ଉଭୟ ପ୍ରତି ସରକାରଙ୍କ କୋପଦୃଷ୍ଟି ପଡ଼ିଲା । ଏଥିପାଇଁ ପ୍ରେମ-ଚନ୍ଦଙ୍କୁ ଜାମିନ ଦେବାକୁ କୁହାଗଲା । ଏଣୁ ବାଧ୍ୟହୋଇ ହଂସ ଓ ପ୍ରେସ୍ ଉଭୟକୁ ସେ ବନ୍ଦ କରିଦେଲେ । ଅବଶ୍ୟ ଉଭୟଟିରେ ସେ ଏ ଯାବତ୍ ବହୁ କ୍ଷତି ସହି ସାରିଥାନ୍ତି ।

ଘୋର ଅର୍ଥାଭାବ ଭିତରେ ଥାଇ ସୁଦ୍ଧା ଏହି ସମୟରେ ଲମହୀଠାରେ ପ୍ରେମଚନ୍ଦ ନିଜର ଏକମାତ୍ର ଝିଅ କମଳାର ବିବାହ ସମ୍ପନ୍ନ କଲେ । ବାହାଘର ପରେ ଶିବରାଣୀ ଦେବୀ ମଧ୍ୟ ଗୃହ ଜଞ୍ଜାଳରୁ କିଛି ପରିମାଣରେ ମୁକ୍ତ ହୋଇ ରାଷ୍ଟ୍ରୀୟ କାର୍ଯ୍ୟରେ ଅଧିକ ସମୟ ଦେବାକୁ ଲାଗିଲେ । ସେ କଂଗ୍ରେସରେ ଯୋଗ ଦେଇ ସ୍ୱୟଂସେବିକାମାନଙ୍କର ମୁଖ୍ୟ ଭାବରେ କାର୍ଯ୍ୟ କରୁଥାନ୍ତି । ଲବଣ ସତ୍ୟାଗ୍ରହରେ ଗିରଫ ହୋଇ ତାଙ୍କୁ ଦୁଇମାସ ଜେଲଦଣ୍ଡ ଭୋଗିବାକୁ ପଡ଼ିଲା ! ଏଥିରେ ପ୍ରେମଚନ୍ଦ ଆଦୌ ବିଚଳିତ ହେଲେ ନାହିଁ । ବରଂ ସ୍ୱାସ୍ଥ୍ୟଗତ କାରଣରୁ ଯାହା କରିବାକୁ ସେ ଅସମର୍ଥ, ଶିବରାଣୀ ଦେବୀ ତାହା କରିପାରିଲେ ବୋଲି ସେ ସନ୍ତୋଷ ପ୍ରକାଶ କଲେ ।

ସ୍ୱାଧୀନତା ଆନ୍ଦୋଳନର ପ୍ରତିଟି ଗତିବିଧିକୁ ସୂକ୍ଷ୍ମ ଭାବରେ ନିରୀକ୍ଷଣ କରି ପ୍ରେମଚନ୍ଦ 'କର୍ମଭୂମି' ଉପନ୍ୟାସର କଳେବର ନିର୍ମାଣ କରୁଥାନ୍ତି । ଏଥିରେ ଯୁବାବର୍ଗର ପ୍ରତିନିଧି ପାତ୍ର ଅମରକାନ୍ତ ମାଧ୍ୟମରେ ସେ ଗାନ୍ଧିଜୀଙ୍କ ଆଦର୍ଶକୁ ରୂପାୟିତ କରିବା ସଙ୍ଗେ ସାଙ୍ଗେ ଯେ କୌଣସି ମୂଲ୍ୟଦେଇ ସମାଜର ସାମଗ୍ରିକ ସଂସ୍କାର ନିମନ୍ତେ କଟିବଦ୍ଧ ଯୁବକର ଆଦର୍ଶ ଉପସ୍ଥାପିତ କରିଛନ୍ତି । ୧୯୩୨ ମସିହାରେ 'କର୍ମଭୂମି' ପ୍ରକାଶ ପାଇଲା ।

ଲକ୍ଷ୍ନୌରୁ ଫେରି ପ୍ରେମଚନ୍ଦ ଦିଲ୍ଲୀରେ ଜୈନେନ୍ଦ୍ର ଓ ଏଲାହାବାଦରେ ମହାଦେବୀ ବର୍ମାଙ୍କୁ ଭେଟିଲେ । ଆଗରୁ କୌଣସି ଖବର ନ ଦେଇ ହଠାତ୍ ପହଞ୍ଚିଗଲେ ଏବଂ ନିଜର ସ୍ୱାଭାବିକ ହସ ଓ ଆତ୍ମୀୟତାର ଅମୃତ ବରଷା କରି ଫେରିଗଲେ । ତାଙ୍କର ସରଳ, ଅକୃତ୍ରିମ ଘରୋଇ ବ୍ୟବହାର ଥରକର ସାକ୍ଷାତରେ ସବୁଦିନ ପାଇଁ ଆଙ୍କି ହୋଇ ରହିଯାଏ ।

# ସାହିତ୍ୟିକ ପ୍ରେମଚନ୍ଦ

ଇତିମଧ୍ୟରେ ପ୍ରେମଚନ୍ଦ ବହୁ ସଂଖ୍ୟକ ଗଳ୍ପ ରଚନା କରି ସାରିଥାନ୍ତି । ସମ୍ପାଦକୀୟ ମାଧ୍ୟମରେ ବିବିଧ ପ୍ରସଙ୍ଗ ଉପରେ ତାଙ୍କ ବିସ୍ତୃତ-ଆଲୋଚନା ମଧ୍ୟ ପ୍ରକାଶ ପାଉଥାଏ । ଗୋର୍କୀ, ଟଲଷ୍ଟୟ, ଚେଖବ, ତୁର୍ଗନେଭ ପ୍ରଭୃତି ତାଙ୍କର ପ୍ରିୟ ଲେଖକଙ୍କର ରଚନା-ବଳୀ ସେ ଯେତେବେଳେ ସମୟ ପାଆନ୍ତି, ପଢ଼ିଯାଆନ୍ତି । ଏପରିକି. ଗୋର୍କୀଙ୍କୁ ସେ ନିଜର ସାହିତ୍ୟିକ ଗୁରୁ ଜ୍ଞାନ କରୁଥିଲେ । ଟଲଷ୍ଟୟଙ୍କର କେତେକ କାହାଣୀର ଅନୁବାଦ କରି ସଙ୍କଳିତ କଲେ । ଏତଦ୍‌ବ୍ୟତୀତ ଅନ୍ୟ ଅନେକ ପାଶ୍ଚାତ୍ୟ ଗ୍ରନ୍ଥର ଅନୁବାଦ ପ୍ରଣୟନ କଲେ ।

ଏଣିକି ଗାଁରେ ରହି ପ୍ରେମଚନ୍ଦ ଅଧିକାଂଶ ସମୟ ଲେଖା-ପଢ଼ାରେ ହିଁ ବିତାଉଥାନ୍ତି । 'ଗୋଦାନ' ଲେଖା ଆରମ୍ଭ ହୋଇଥାଏ । ମଝି ମଝିରେ 'ହଂସ', 'ଜାଗରଣ' ଓ ପ୍ରେସ୍ କଥା ବୁଝାସୁଝା କରିବାକୁ ସେ ବନାରସ ଯାଆନ୍ତି । ବ୍ୟବସାୟ-ବୁଦ୍ଧିର ଘୋର ଅଭାବରେ ପତ୍ରିକା ଓ ପ୍ରେସ୍ ଉଭୟରେ ସେ କ୍ଷତିଗ୍ରସ୍ତ ହେଉଥାନ୍ତି । ତଥାପି ସେଥିପ୍ରତି ଚିନ୍ତା ନ ଥାଏ । ଫେରିଲାବେଳେ ସୁଂଘଣୀ ସାହୁ ଦୋକାନ ହୋଇ ଆସନ୍ତି । ଦୋକାନ ଆଗରେ ପ୍ରଖ୍ୟାତ ସାହିତ୍ୟିକ ଜୟଶଙ୍କର ପ୍ରସାଦଙ୍କର ସାହିତ୍ୟିକ ଆଡ୍ଡା ଜମେ । ବନାରସର ପ୍ରସିଦ୍ଧ ସାହିତ୍ୟିକଙ୍କର ସମାବେଶ ସେଇଠି । ପ୍ରେମଚନ୍ଦଙ୍କର ପହଞ୍ଚିବା ମାତ୍ରେ ବୈଠକରେ ଅଦ୍‌ଭୁତ ସ୍ଫୂର୍ତ୍ତି ଆସିଯାଏ । ସାହିତ୍ୟିକ ବ୍ୟଙ୍ଗ-ବିନୋଦ ସାଙ୍ଗକୁ ପ୍ରେମଚନ୍ଦଙ୍କର ସେଇ ଯେଉଁ ପ୍ରାଣଖୋଲା ବେପରୁଆ ହସ ! ଦୂର ଦୂରକୁ ଶୁଣାଯାଉଥାଏ । ସେ ସମୟରେ କାମାୟନୀକାର ଜୟଶଙ୍କର

ଐତିହାସିକ ନାଟକର ସୁଅ ଛୁଟାଇଥାନ୍ତି—ଅଜାତଶତ୍ରୁ, ଚନ୍ଦ୍ରଗୁପ୍ତ, ସ୍କନ୍ଦଗୁପ୍ତ, ଧ୍ରୁବସ୍ୱାମିନୀ······ଆଦି । କଥା କଥାରେ ପ୍ରେମଚନ୍ଦ ତାଙ୍କୁ ଶୁଣାଇଲେ—'ଭଇ, ତୁମେ ତ କ'ଣ ଖାଲି ପୋତା ହୋଇଥିବା ଶବ ସବୁ ଖୋଳିବାରେ ଲାଗିଛ ! ସାମାଜିକ ସମସ୍ୟାକୁ ନେଇ କିଛି ଲେଖ ।' ବାସ୍, ତାକୁ ହିଁ ଚ୍ୟାଲେଞ୍ଜ୍ ମନେ କରି ପ୍ରସାଦଜୀ ଲେଖିଲେ 'କଙ୍କାଳ' ଓ 'ତିତଲୀ' ନାମକ ଦୁଇଗୋଟି ଉପନ୍ୟାସ । ପ୍ରେମଚନ୍ଦଙ୍କ ଖୁସି କହିଲେ ନ ସରେ । ଏଥିପାଇଁ ପ୍ରସାଦଙ୍କୁ ବଧେଇ ଜଣାଇଲେ । ସେହି ଦୁଇଖଣ୍ଡି ଉପନ୍ୟାସ କ୍ଷେତ୍ରରେ ତାଙ୍କୁ ଅମର ଆସନର ଅଧିକାରୀ କରିଦେଲା ।

'ସେବା-ସଦନ' ଉପନ୍ୟାସର ଲୋକପ୍ରିୟତା ଦେଖି ଅଜନ୍ତା ସିନେଟୋନ୍‌ର ମାଲିକ ମୋହନ ଭବନାନୀ ତା ଉପରେ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ସେ ବମ୍ବେରୁ ଆସି ପ୍ରେମଚନ୍ଦଙ୍କ ଦ୍ୱାରସ୍ଥ ହେଲେ ଓ ତାଙ୍କୁ ସିନେମା କମ୍ପାନୀ ପାଇଁ ଗଳ୍ପ ଲେଖିବାକୁ ଅନୁରୋଧ ଜଣାଇଲେ । ବାର୍ଷିକ ଦରମା ଆଠ ହଜାର । ପ୍ରେମଚନ୍ଦ ମିତ୍ର-ମଣ୍ଡଳୀଙ୍କର ପରାମର୍ଶ ଲୋଡ଼ିଲେ । ପ୍ରସାଦଜୀ, ଜୈନେନ୍ଦ୍ରଜୀ ସମସ୍ତେ ବମ୍ବେ ଯିବା ପାଇଁ ପ୍ରେମଚନ୍ଦଙ୍କୁ ବାରଣ କଲେ । ପ୍ରେମଚନ୍ଦ ନିଜେ ମଧ୍ୟ ନିଜର ପଢ଼ା-ଲେଖା ଛାଡ଼ି ସିନେମା-ଜଗତକୁ ଯିବାକୁ ରାଜି ନ ଥିଲେ । କିନ୍ତୁ 'ହଂସ' ଓ 'ଜାଗରଣ' ପାଇଁ କରିଥିବା ଋଣରୁ ମୁକ୍ତ ହେବା ପାଇଁ ତଥା ଅର୍ଥ କଷ୍ଟରୁ ଉଦ୍ଧାର ପାଇଁ ପ୍ରେସ୍‌ଟିକୁ ଚଳାଇବା ଉଦ୍ଦେଶ୍ୟରେ ସିନେମା-କମ୍ପାନୀରେ କାମ କରିବା ପାଇଁ ନିଷ୍ପତ୍ତି ନେଲେ । ମାତ୍ର ବର୍ଷକ ପାଇଁ ଏଗ୍ରିମେଣ୍ଟ ହେଲା । ଭାବିଲେ, ବର୍ଷେ କାମ କରି ଦେଖିବି । ତା'ପରେ ଫେରିଆସି ଘରେ ବସି ସିନେମା ପାଇଁ କିଛି କିଛି

ଲେଖିବ । ଫଳରେ ସେଥିରୁ ଯାହା କିଛି ମିଳିବ, ତହିଁରେ 'ହଂସ' ଓ 'ଜାଗରଣ'ର ପ୍ରକାଶନ ସୁରୁଖୁରୁରେ ଚାଲିଯିବ ।

୩୧ ମେ' ୧୯୩୪ ଦିନ ବମ୍ବେରେ ପହଞ୍ଚି ତା ପରଦିନଠାରୁ ପ୍ରେମଚନ୍ଦ ଅଜନ୍ତା ସିନେଟୋନ୍‌ର ଗଳ୍ପ-ସମ୍ବାଦ ଲେଖକ ଭାବରେ କାର୍ଯ୍ୟଭାର ଗ୍ରହଣ କଲେ । ମାସେ କାଳ କେବଳ ଚଳଚ୍ଚିତ୍ର ନିର୍ମାଣ ଓ ବିଷୟବସ୍ତୁ ସମ୍ବନ୍ଧୀ ପୁସ୍ତକମାନ ପଢ଼ିବାରେ ଏବଂ ସେ ସମ୍ପର୍କରେ ବିଶଦ ଜ୍ଞାନ ଆହରଣ କରିବାରେ କଟାଇଦେଲେ । ତା'ପରେ ପ୍ରଥମ କରି 'ମଜଦୁର' ନାମକ ଗୋଟିଏ ଚଳଚ୍ଚିତ୍ରର କାହାଣୀ ଓ ସମ୍ବାଦ ଲେଖିଲେ । ଚଳଚ୍ଚିତ୍ର ନିର୍ମିତ ହେଲା । ଦେଶ-ବିଦେଶରେ ଉଚ୍ଚ ପ୍ରଶଂସିତ ହେଲା । କିନ୍ତୁ କୌଣସି କାରଣରୁ ରାଜ୍ୟ ସରକାରଙ୍କ ତରଫରୁ ସେଇ ଚଳଚ୍ଚିତ୍ରର ପ୍ରଦର୍ଶନ ଉପରେ ନିଷେଧାଜ୍ଞା ଜାରି କରାଗଲା ।

ଏହାପରେ ପ୍ରେମଚନ୍ଦ ବହୁ ସାମାଜିକ ଗଳ୍ପମାନ ଲେଖିଲେ । ହେଲେ ଶିକ୍ଷିତ କଳାକାରଙ୍କ ଅଭାବରୁ କେଉଁଟିର ଫିଲ୍ମୀକରଣ ହୋଇପାରିଲା ନାହିଁ ତ ବ୍ୟବସାୟିକ ଦୃଷ୍ଟିରୁ କେଉଁଟି ନିର୍ମାତାଙ୍କର ପସନ୍ଦ ହେଲା ନାହିଁ । ସେମାନେ ସେଇ ପାରମ୍ପରିକ ରାଜା ରାଣୀ, ମନ୍ତ୍ରୀଙ୍କ ଷଡ଼ଯନ୍ତ୍ର, ନକଲି ଯୁଦ୍ଧ, ମାରକାଟ ଇତ୍ୟାଦି ଦେଖାଇ ଦର୍ଶକଙ୍କର ଶସ୍ତା ମନୋରଞ୍ଜନ କରିବା ପାଇଁ ଆଗ୍ରହୀ । ଭଲ୍‌ଗାରିଟିକୁ ଏମାନେ ଏଣ୍ଟରଟେନ୍‌ମେଣ୍ଟ ଭେଲ୍ୟୁ ବୋଲି କହନ୍ତି । ସୁରୁଚି ଓ ମୂଲ୍ୟବୋଧର ଏମାନଙ୍କ ନିକଟରେ କୌଣସି ଅର୍ଥ ନାହିଁ । ଏଣୁ କୌଣସି ପ୍ରକାରେ ବର୍ଷକର କଣ୍ଟ୍ରାକ୍ଟ ପୁରା କଲା ପର୍ଯ୍ୟନ୍ତ ଏଠି ରହିବାକୁ ହେବ ଭାବି ପ୍ରେମଚନ୍ଦ କାମ କରି ଯାଉଥାନ୍ତି । ତାଙ୍କ ଜୀବନର ସମସ୍ତ ଅନୁଭୂତିକୁ ଏକାଠି କରି ସୃଷ୍ଟି

କରିଥିବା 'ଗୋଦାନ' ଉପନ୍ୟାସ ଏବେ ଶେଷ ପର୍ଯ୍ୟାୟରେ ଉପନୀତ ହୋଇ ସାରିଥାଏ । କିନ୍ତୁ ସେଠିକାର ବାତାବରଣରେ 'ଗୋଦାନ'ର ଅବଶିଷ୍ଟାଂଶ ଲେଖିବାକୁ ତାଙ୍କର ଆଉ ସ୍ପୃହା ହେଉ ନ ଥାଏ ।

ହଠାତ୍ ଦିନେ ପ୍ରେମଚନ୍ଦ ନିର୍ଣ୍ଣୟ ନେଲେ ଯେ, ସେ ବନାରସ ଫେରିଯିବେ । କଣ୍ଟ୍ରାକ୍ଟ ପୂରା ହେବାକୁ ଆହୁରି ତିନି ମାସ ବାକି ଥାଏ । ମୋଟ ୭,୩୦୦ ଟଙ୍କା ପାଇଲେ । ନିଜର ଓ ପୁଅ-ଝିଅଙ୍କର ଖର୍ଚ୍ଚ ଯାଇ ଯାହା ବଳିଲା, ତାହା ପ୍ରେସ୍ କାର୍ଯ୍ୟରେ ଲାଗିଗଲା । ବମ୍ବେ ରହଣୀ କାଳରେ ସେ ମାନ୍ଦ୍ରାଜ, ବାଙ୍ଗାଲୋର ଓ ମହୀଶୂର ଯିବା ସୁଯୋଗ ପାଇଥିଲେ । ସେଠି ବିଭିନ୍ନ ସଭା, ସମିତିରେ ଯୋଗଦାନ କରିଥିଲେ । ବମ୍ବେରୁ ଫେରିଲା ବେଳେ ଖଣ୍ଡବା ଯାଇ କବି ମାଖନଲାଲ ଚତୁର୍ବେଦୀଙ୍କ ସହ ସାକ୍ଷାତ କରିଥିଲେ ।

ବମ୍ବେରୁ ଫେରି ପ୍ରେମଚନ୍ଦ ଖୁବ୍ କ୍ଲାନ୍ତ ହୋଇ ପଡ଼ିଥାନ୍ତି । ସମ୍ଭବତଃ, ସେଠିକାର ବ୍ୟସ୍ତ-ବିବ୍ରତ ଜୀବନ ତାଙ୍କୁ ଦୁର୍ବଳ ଓ ରୁଗ୍ଣ କରି ଦେଇଥିଲା । ଏଣେ ଫେରିଲା ପରେ ବି ପ୍ରେମଚନ୍ଦଙ୍କର ବିଶ୍ରାମ ନାହିଁ । ପ୍ରୁଫ୍ ଦେଖିବାଠାରୁ ଆରମ୍ଭ କରି ସଭାସମିତି-ମାନଙ୍କରେ ବିଭିନ୍ନ ବିଷୟରେ ସୁଚିନ୍ତିତ ମତବ୍ୟକ୍ତ କରିବାଯାଏ କୌଣସି କାର୍ଯ୍ୟକୁ ସେ ଅବହେଳା କରନ୍ତି ନାହିଁ ।

ଗ୍ରାମ୍ୟ ଜୀବନର ଆର୍ଥିକ ଅନାଟନ, ଫିଲ୍ମ-ଜଗତର ବ୍ୟସ୍ତତା ଏବଂ ସେଠାରୁ ଫେରି କ୍ଲାନ୍ତ ଓ ଅସୁସ୍ଥତାର ଶିକାର ହୋଇ ସୁଦ୍ଧା ପ୍ରେମଚନ୍ଦ କୃଷକ ଜୀବନର ମହାକାବ୍ୟ 'ଗୋଦାନ' ଉପନ୍ୟାସ ପ୍ରତି ଅବହେଳା କରି ନାହାନ୍ତି । ଜଣେ ସନ୍ଥାଟ, ଧର୍ମଭୀରୁ

କୃଷକର ଦୁଃଖ, ଦାରିଦ୍ର୍ୟ, ଜଞ୍ଜାଳ ଓ ଜୀବନର ହସକାନ୍ଦକୁ ଯେଉଁଭଳି ଭାବରେ ସେ ଆଙ୍କି ଦେଇଛନ୍ତି, ସେଥିରେ ଭାରତୀୟ କୃଷକର ଜୀବନ ସତେ ଯେମିତି ଚଳଚ୍ଚିତ୍ରର ପରଦାରେ ପ୍ରାଞ୍ଜଳ ହୋଇ ଉଠୁଛି । ମହାଜନୀ ଶୋଷଣ ପ୍ରତି ଆକ୍ରୋଶ ସାଙ୍ଗକୁ ଲୁଟିଖିଆଙ୍କ ବିରୁଦ୍ଧରେ ଖଟିଖିଆଙ୍କ ଭିତରୁ ସତେ ଯେମିତି ବିଦ୍ରୋହର ଏକ ଗୁପ୍ତ ସ୍ୱର ଶୁଣାଯାଉଛି । ଧନ, ଜମି ଓ ଧର୍ମର ଦୁହାଇ ଦେଇ ଯେ କୌଣସି ଆଳରେ ଗରିବଙ୍କୁ ଶୋଷଣ ସମାଜକୁ କଳୁଷିତ କରେ । ପ୍ରେମଚନ୍ଦ ତାହାର ପରିସମାପ୍ତି ଚାହାନ୍ତି । ଭାବର ତୀବ୍ର ପ୍ରବାହରେ ୧୯୩୬ ମାର୍ଚ୍ଚ ସୁଦ୍ଧା 'ଗୋଦାନ' ଲେଖା 'ଶେଷ ହେଲା । ଜୁନ୍‌ରେ ସରସ୍ୱତୀ ପ୍ରେସ୍‌ରୁ ମୁଦ୍ରିତ ହୋଇ ଆସିଗଲା । ନିଜର ସ୍ୱଭାବ ଅନୁଯାୟୀ ଗୋଟିଏ ଉପନ୍ୟାସର ମୁଣ୍ଡି ନ ମରୁଣୁ ପ୍ରେମଚନ୍ଦ ଆଉ ଗୋଟିକର ନିଅଁ ଦେଇ ସାରିଥାନ୍ତି । ଜଣେ ଦୁଃସ୍ଥ ଲେଖକର ଜୀବନ ଉପରେ ଆଧାରିତ 'ମଙ୍ଗଳସୂତ୍ର' ଉପନ୍ୟାସ ଆତ୍ମକଥାତ୍ମକ ଶୈଳୀରେ ଲେଖାଗଲା ଭଳି ଜଣାଯାଉଥାଏ । ତାକୁ ଚୂରିରୁ ଗଛ ଅବସ୍ଥାରେ ପହଞ୍ଚାଇବା ପୂର୍ବରୁ ପ୍ରେମଚନ୍ଦଙ୍କ ଲେଖନୀ ନୀରବ, ନିଶ୍ଚଳ ହୋଇଯାଇଥିଲା ।

୧୯୩୫ ମସିହାରେ ମୁଲ୍‌କରାଜ ଆନନ୍ଦ ଓ ଅନ୍ୟ କେତେ ଜଣ ଭାରତୀୟ ଛାତ୍ର ଲଣ୍ଡନରେ ଭାରତୀୟ ପ୍ରଗତିଶୀଳ ଲେଖକ ସଂଘ ନାମକ ସଙ୍ଗଠନଟିଏ ଗଢ଼ିଥିଲେ । ସଙ୍ଗଠନର ଉଦ୍ଦେଶ୍ୟ ସମ୍ପର୍କରେ ଜାଣିଲା ପରେ ପ୍ରେମଚନ୍ଦ 'ହଂସ'ର ସମ୍ପାଦକୀୟରେ ତାକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ନିଜ ବିଚାର ମଧ୍ୟ ବ୍ୟକ୍ତ କରିଥିଲେ । ୧୯୩୬ରେ ଲକ୍ଷ୍ନୌଠାରେ ତା'ର ପ୍ରଥମ ଅଧିବେଶନ ଅନୁଷ୍ଠିତ କରିବା ପାଇଁ ସ୍ଥିର କରି ସଙ୍ଗଠନର ଉଦ୍ୟୋକ୍ତାମାନେ ପ୍ରେମଚନ୍ଦଙ୍କୁ ସେଥିରେ ସଭାପତିତ୍ୱ କରିବା ପାଇଁ ଅନୁରୋଧ ଜଣାଇଲେ ।

ପ୍ରେମଚନ୍ଦ ଯୁବ ଉଦ୍ୟୋଗୀମାନଙ୍କ ପ୍ରସ୍ତାବ ଗ୍ରହଣ କରି ଅଧିବେଶନରେ ଯେଉଁ ଅଧ୍ୟକ୍ଷୀୟ ଅଭିଭାଷଣ ଦେଇଥିଲେ, ତାହା ସମଗ୍ର ସାହିତ୍ୟ-ସଂସାରକୁ ଦିଗ୍‌ଦର୍ଶନ ଦେଇଥିଲା । ମୁଖ୍ୟତଃ ସାହିତ୍ୟର ଉପଯୋଗିତା ଉପରେ ଜୋର୍ ଦେଇ ମଣିଷର ସମାଜିକ ଓ ନୈତିକ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେବା ପାଇଁ ସେ ଯୁବ ସାହିତ୍ୟିକ-ମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ଲକ୍ଷ୍ନୌଠାରୁ ସିଧା ଲାହୋର ଯାଇ ପ୍ରେମଚନ୍ଦ ସେଠିକାର ଆର୍ଯ୍ୟ ପ୍ରତିନିଧି ସଭାକୁ ସମ୍ବୋଧିତ କଲେ । ସେଠାରୁ ନାଗପୁର ଯାଇ ଭାରତୀୟ ସାହିତ୍ୟ ପରିଷଦର ଅଧିବେଶନରେ ଯୋଗ ଦେଲେ । ଏହିଭଳି ଭାବରେ ଆଗ୍ରା, ଏଲାହାବାଦ, ପାଟନା, ଶାନ୍ତିନିକେତନ, ପୂର୍ଣ୍ଣିଆ ପ୍ରଭୃତି ଅନେକ ସ୍ଥାନରେ ଭିନ୍ନ ଭିନ୍ନ ଅନୁଷ୍ଠାନମାନଙ୍କରେ ଯୋଗ ଦେଇ ପ୍ରେମଚନ୍ଦ ବିଭିନ୍ନ ଆଲୋ-ଚନାରେ ଅଂଶ ଗ୍ରହଣ କରିଛନ୍ତି ।

ହିନ୍ଦୀ ଏବଂ ଉର୍ଦ୍ଦୁ ଭାଷାର ପ୍ରସିଦ୍ଧ କଥାକାର ଭାବେ ଖ୍ୟାତିପ୍ରାପ୍ତ ପ୍ରେମଚନ୍ଦ 'ହିନ୍ଦୁସ୍ଥାନୀ ସଭା' ନାମକ ସଂସ୍ଥାଟିଏ ଖୋଲି ସେଥିରେ ଉଭୟ ଭାଷାର ସାହିତ୍ୟିକମାନଙ୍କୁ ସଙ୍ଗଠିତ କରିବାକୁ ଚାହୁଁଥିଲେ । ସମ୍ଭବତଃ ଏହି ସଙ୍ଗଠନ ମାଧ୍ୟମରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସାମ୍ପ୍ରଦାୟିକ ସମନ୍ୱୟ ପ୍ରତିଷ୍ଠା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ କାଳ ତାଙ୍କୁ ସେଥିପାଇଁ ଅନୁମତି ଦେଲାନାହିଁ ।

## ଅନ୍ତିମ ଜୀବନ

ଜଳୋଦର ରୋଗ, ପେଟବ୍ୟଥା, ଝାଡ଼ା, ଜ୍ୱର, ବାନ୍ତି ଇତ୍ୟାଦିର ପ୍ରକୋପରେ ପ୍ରେମଚନ୍ଦଙ୍କ ଶରୀର ଜର୍ଜରିତ ହୋଇ

ଯାଇଥିଲା । ତଥାପି ଅବାରିତ ଗତିରେ ସେ ତାଙ୍କର କଲମକୁ ଦଉଡ଼ାଇ ଚାଲିଥାନ୍ତି । ଯାହା କିଛି ତାଙ୍କ ହୃଦୟକୁ ଉଦ୍‌ବେଳିତ କରୁଛି, ସବୁକଥା କହିଦେଇ ଚାଲିଯିବାକୁ ଚାହାନ୍ତି ବୋଧହୁଏ ! ହୁଏତ ଜୀବନ-ଦୀପ ଲିଭି ଆସୁଥିବା ସେ ହୃଦୟଙ୍ଗମ କରିପାରିଥିଲେ । 'ମହାଜନୀ ସଭ୍ୟତା' ପ୍ରବନ୍ଧ ଓ 'କଫନ' ଗଳ୍ପ ଭଳି ପ୍ରୌଢ଼ ରଚନା ଏହି ସମୟର ସୃଷ୍ଟି ।

୧୯୩୬ ଜୁନ୍ ୧୬ ତାରିଖରେ ପ୍ରେମଚନ୍ଦଙ୍କର ପ୍ରିୟ ବିଶ୍ୱ-ବିଖ୍ୟାତ ରୁଷୀ ଲେଖକ ମାକ୍‌ସିମ ଗୋର୍କୀଙ୍କର ନିଧନ ହେଲା । ବନାରସରେ ତାଙ୍କ ଉଦ୍ଦେଶ୍ୟରେ ଶୋକସଭା ଅନୁଷ୍ଠିତ ହେଲା । ଅସୁସ୍ଥ ଅବସ୍ଥାରେ ଥାଇ ସୁଦ୍ଧା ପ୍ରେମଚନ୍ଦ ନିଜର ଶ୍ରଦ୍ଧାଞ୍ଜଳି ଲେଖି ନେଇ ଆସିଲେ । କିନ୍ତୁ ପେଟରେ ଯନ୍ତ୍ରଣା ହେତୁ ନିଜେ ପଢ଼ି ନ ପାରି ଅନ୍ୟ ଦ୍ୱାରା ପଢ଼ାଇଲେ । କୌଣସି ପ୍ରକାରେ ସେଦିନ ଘରକୁ ଫେରି ଚିକିତ୍ସା କରାଇଲେ । ରୋଗ କିଞ୍ଚିତ୍ ଉପଶମ ହେଲା । କିନ୍ତୁ ଠିକ୍ ସପ୍ତାହକ ପରେ ରକ୍ତବାନ୍ତି ହେଲା । ପେଟ ଭିତରେ ଆଘାତ ଲାଗିଛି ଭାବି ଡାକ୍ତରମାନେ ବହୁ ଚିକିତ୍ସା କଲେ । ଆହୁରି ଉତ୍ତମ ଚିକିତ୍ସା ପାଇଁ ଲକ୍ଷ୍ନୌ ନିଆଗଲା । କିଛି ବିଶେଷ ଫଳ ହେଲା ନାହିଁ । ଜଳୋଦର ରୋଗ ବହୁତ ବଢ଼ି ଯାଇଥିଲା ।

ବନାରସରେ ମୁକ୍ତ ବାୟୁ ଚଳାଚଳ କରୁଥିବା ବାବୁ ଭାରତେନ୍ଦୁ ହରିଶ୍ଚନ୍ଦ୍ରଙ୍କ ଭବନର ସ୍ୱଚ୍ଛ, ଶାନ୍ତ ପରିବେଶରେ ପ୍ରେମଚନ୍ଦଙ୍କୁ ରଖାଗଲା । ପରିବାରର ଲୋକେ, ବନ୍ଧୁ, ସାହିତ୍ୟ-ପ୍ରେମୀ, ପାଠକ ଓ ଶୁଭେଚ୍ଛୁମାନେ ତାଙ୍କର ଦେଖାଶୁଣା କରୁଥାନ୍ତି । ଚିକିତ୍ସା ଚାଲିଥାଏ ।

ସାରା ଜୀବନ ଜମିଦାର, ସାହୁକାରଙ୍କ ଶୋଷଣ, ଭଣ୍ଡ ସାଧୁ-ପୂଜାରୀଙ୍କ ଠକାମୀ ଏବଂ ସରକାରୀ ହାକିମ-ହୁକୁମାଙ୍କ ଦୌରାତ୍ମ୍ୟ

ବିରୁଦ୍ଧରେ କଲମ ମୂନରେ ଲଢ଼ି ଆସିଥିବା କଥାକାର ପ୍ରେମଚନ୍ଦ ଏବେ ଶଯ୍ୟାଶାୟୀ ଅବସ୍ଥାରେ ମୃତ୍ୟୁ ସହ ଲଢ଼ି ଚାଲିଛନ୍ତି ।

ଦେଶପ୍ରେମୀ ସାହିତ୍ୟିକ ପ୍ରେମଚନ୍ଦ ୧୮୮୦ ମସିହାରେ ଜନ୍ମ ହୋଇ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ମଣିଷ ସମାଜର ଆଖି ଖୋଲି ଦେଇ ଶେଷରେ ୮ ଅକ୍ଟୋବର ୧୯୩୬ ମସିହା ପ୍ରତ୍ୟୁଷରୁ ହିଁ ସବୁଦିନ ପାଇଁ ଆଖି ବୁଜିଦେଲେ । ପ୍ରାୟ ୧୨ ଗୋଟି ଉପନ୍ୟାସ, ୩ଟି ଜୀବନୀ, ୩ଟି ନାଟକ, ୧୦ ଗୋଟି ଅନୂଦିତ ଗଳ୍ପ, ପାଖାପାଖି ୩୦୦ ଗଳ୍ପ ତଥା ବହୁ ପ୍ରବନ୍ଧ ଓ ବିଚାରାତ୍ମକ ଲେଖା ଜରିଆରେ ଆମର ପଥପ୍ରଦର୍ଶନ କରି ସେ ସ୍ୱୟଂ ମହାପଥର ଯାତ୍ରୀ ହୋଇଗଲେ ।

ବନାରସର ମଣିକର୍ଣ୍ଣିକା ଘାଟରେ ତାଙ୍କ ଚିତାକୁ ଅନାଇ ଜୟଶଙ୍କର ପ୍ରସାଦ, ଜୈନେନ୍ଦ୍ରଙ୍କ ସମେତ ବହୁ ଜ୍ଞାନୀ, ଗୁଣୀ, ପାଠକ ଓ ପ୍ରଶଂସକ ଅଶ୍ରୁଳ ନୟନରେ ନିଜ ନିଜର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥାନ୍ତି ।

